# ଅଭିଜ୍ଞାନ

ସଚ୍ଚିଦାନନ୍ଦ ରାଉତରାୟ

ପ୍ରଥମ ସଂସ୍କରଣ

୧୯୪୯

ମୂଲ୍ୟ ଟ ୦ ୴୶ ଚଉଦ ଅଣା ମାତ୍ର

ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟଙ୍କୁ

ଶ୍ରଦ୍ଧା ନିବେଦନ

ସଚ୍ଚିଦାନନ୍ଦ ରାଉତରାୟ

ତା ୫।୧୦।୪୯

କ ଲି କ ତା

“ଅଧୁନିକ ଜୀବନର ଭାବପ୍ରବାହ ବହୁ ଦ୍ୱନ୍ଦ୍ୱ ଧରି ପାରିପାର୍ଶ୍ୱିକ ଜଟିଳତା ମଧ୍ୟରେ ପଥରୁଦ୍ଧ ହୋଇ ପଡ଼ିଥିଲା । ଶ୍ରୀଯୁକ୍ତ ରାଉତରାୟ ନୂତନ ଯୁଗର ସେଇ ଭାବପ୍ରବାହକୁ ତାଙ୍କ କବିତାରେ ରୂପାୟିତ କରିଅଛନ୍ତି ।”

—ପ୍ରଜାତନ୍ତ୍ର, ମାର୍ଚ୍ଚ ୧୯, ୧୯୪୯

# ସୂଚି



---

## ସଚ୍ଚିଦାନନ୍ଦ ରାଉତରାୟଙ୍କ ପ୍ରଣୀତ ଅନ୍ୟାନ୍ୟ ଗ୍ରନ୍ଥ

### କଟକ ପବ୍ଲିଶିଙ୍ଗ୍ ହାଉସ୍ ପ୍ରକାଶିତ

୧ । ଛାଇ (ଗଳ୍ପ ସଂଗ୍ରହ)
୨ । ହସନ୍ତ (ବ୍ୟଙ୍ଗ-କବିତା)
୩ । ଅଭିଜ୍ଞାନ (କବିତା ସଗ୍ରହ)

### ଉତ୍କଳ ବୁକ୍ ଏଜେନ୍ସି, କଟକ, ପ୍ରକାଶିତ

| | |
|---|---|
| ୪ । ପାଣ୍ଡୁଲିପି (କବିତା ସଗ୍ରହ) | ଟ ୨ ୧ |
| ୫ । ମଶାଣିର ଫୁଲ (ଗଳ୍ପ ସଗ୍ରହ) ୨ୟ ସସ୍କରଣ | ଟ ୦୷୶ |
| ୬ । ମାଟିର ତାଜ୍ (ଗଳ୍ପ ସଗ୍ରହ) | ଟ ୧ ୧ |
| ୭ । ପଲ୍ଲିଶ୍ରୀ (କବିତା ସଗ୍ରହ) ୨ୟ ସସ୍କରଣ | ଟ ୦ ୷ |
| ୮ । ଅଭିଯାନ (କବିତା) ୨ୟ ସସ୍କରଣ | ଟ ୦ ୷ |

### ଭାରତୀ ଭବନ, ପୁରୀ, ପ୍ରକାଶିତ

| | |
|---|---|
| ୯ । ଭାନୁମତୀର ଦେଶ (ଗଦ୍ୟ କବିତା) | ଟ ୦ ୷ |
| ୧୦ । ବାଜିରାଉତ (କବିତା) ୩ୟ ସସ୍କରଣ | ଟ ୦ ୷ |

### ଅନ୍ୟାନ୍ୟ

| | |
|---|---|
| ୧୧ । ଚିତ୍ରଗ୍ରୀବ (ଉପନ୍ୟାସ) | ଟ ୧ ୧ |
| ୧୨ । ପାଥେୟ (କବିତା) | ଟ ୦ ୶ |
| ୧୩ । ପୂର୍ଣ୍ଣିମା (ଗୀତିନାଟ୍ୟ) | ଟ ୦।୶ |

୧୪ । କବି ହାରୀନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ କୃତ
ବାଜି ରାଉତର ଇଂରାଜୀ ଅନୁବାଦ
The Boatman Boy and Other Poems Re. 1-8-0

ସବୁ ବଡ଼ ବଡ଼ ବହି ଦୋକାନରେ ମିଳେ ।

# ଅଭିଜ୍ଞାନ

## ପ୍ରଭାତଫେରୀର ଗାନ

ପ୍ରଭାତଫେରୀର ଦଳ !
ଚାଲ, ଚାଲ,
ରାତ ଆଉ ନାଇ ।
ରାତ ନାଇ, ରାତ ଗଲା ପାଇ ।
ଚାଲ, ଚାଲ
ସୂର୍ଯ୍ୟର ଗାନ ଗାଇ ।

ବାଦେ ଆମ ଆତ୍ମ-ଦ୍ୱନ୍ଦ୍ୱ
ଐକ୍ୟ-ଛନ୍ଦ
ଶୁଭୁ ନାଇ କଆଁ ?
ଦକ୍ଷିଣରେ ତୀବ୍ର ପ୍ରତିକ୍ରିୟା
ଚାଲ, ଚାଲ, ମୁକ୍ତି-ସେତୁ ବାନ୍ଧୁ ।

ଚଲ, ଚଲ, ସୂର୍ଯ୍ୟର ଗାନ ଗାଇ
ସୂର୍ଯ୍ୟର ଗାନ ଗାଇ ।
ଆମେ ଯୁଗ ଶେଷ ବନ୍ଦୀ !
ଶୃଙ୍ଖଳର ଶେଷ ଡାକ ଶୁଣି,
କାରାଗାର ଅନ୍ଧକନ୍ଧ
ପଛୁ ଆମ ଡାକେ ପୁନଃ ପୁନ ।

ଚଲ, ଚଲ ଦ୍ରୁତ ସକାଳର
ଦେଖିବ ବେଳ ସୂର୍ଯ୍ୟ-ପ୍ରଣାମର ।
ଚଲ, ଚଲ, ଜୟଗାନ ଗାଇ ।
ରାଡ଼ି ନାଇ, ରାତି ଆଉ ନାଇ ।
ଚଲ, ଚଲ ।
ସୂର୍ଯ୍ୟର ଗାନ ଗାଇ ।
ଚଲ, ଚଲ । *

---

* "ଜନତା"ରେ ପ୍ରକାଶିତ ।

# ଆମେ ଶେଷ ବନ୍ଦୀ

(୧୫ ଅଗଷ୍ଟ '୪୭ ଉପଲକ୍ଷେ……)

ଆମେ ଶେଷ ବନ୍ଦୀ ।
ଶେଷ ଶୃଙ୍ଖଳର ସ୍ୱର୍ଣ୍ଣ ଲଗେ ?

ଆମ ସଛରେ ଜେଲଖାନାର
ଭଙ୍ଗା ପାଚେରି,
କଳା ମେଘର ଘଡ଼ଘଡ଼ି ପାର ହେଉ
ଶୁଣାଯାଏ—
ନୂଆ ସୂର୍ଯ୍ୟର ଶଙ୍ଖ ନାଦ ।
ମୁକ୍ତିର ସନନ୍ଦ ।

ଆମ ଅଗରୁ, ଅତ୍ତୁର ଅଗରୁ ଯିଏ
ଏଇ ସକାଳର ସ୍ୱପ୍ନ ଦେଖିଥିଲେ,
ଆଜି ସେମାନେ କାହାନ୍ତି ?
ଆଜିଏ ଏ ଅଭୂତ ସାହାନ୍ତି
ରାଜପଥେ, ଗ୍ରାମେ ଆଜ ବଲେ
ତାଙ୍କୁଇ ସ୍ମରଣ କରେ ।
ଆଜର ଏ ଭଗ୍ନାଂଶ ଜଞ୍ଜିର
ପୂର୍ଣ୍ଣ କର ପଣ୍ଡି, ଜନପଦ
ଗାଇ ଉଠେ ତାଙ୍କ ଜୟନାଦ ।
ମୁକ୍ତିର ସନନ୍ଦ ?

ଝଡ଼ରେ ଯିଏ ପଡ଼ଲେ ଏଠି ଝର,
ଝଡ଼ ଶେଷର ଇନ୍ଦ୍ରଧନୁ ତାଁରଇ
ସମ୍ବୋଧନ କରେ ।

ଆମେ କଣ ଶେଷ ବନ୍ଦୀ ?
ପୁରୁଷ ପ୍ରୁରୁଷ ଧରି ଗୋଡ଼ରେ ଥିଲା ଛନ୍ଦା
ଯେଉଁ ଲହାର ଜଂଜିର
ଫିଟି ପଡ଼ି ହେଲା ଚୁରମାର ।
କିନ୍ତୁ ପ୍ରଶ୍ନ ଉଠେ
ଆମେ କଣ ସତେ
କାରାମୁକ୍ତ ସ୍ୱାଧୀନ କଏଦୀ ?

ହୋଇପାରେ ଆମେ ଶେଷବନ୍ଦୀ ।
ଶେଷମୁକ୍ତ କିନ୍ତୁ ଅନାଗତ ।
ଫୁଲ, ପକ୍ଷୀ, ପାହାଡ଼, ପର୍ବତ
ଆଜି ବି ଅପେକ୍ଷା କରେ
ଆସିବ ଆସିବ ବୋଲି ସେ ଶର ସ୍ୱପ୍ନିତ—
ଆଶ୍ଚର୍ଯ ମୁହୂର୍ତ୍ତ ।
ସେଇ ଅନାଗତ ମୁକ୍ତିର ଚେହେରା
ଆଜି ଆମ ଦର୍ଶନରେ ଦେଇଗଲା ଧରା ।
ମନେ ହେଲା—

ଏ ରକ୍ତ-ତାରଖ
ତାରଲ ଭୂମିକା ।
ଆଜର ଏ ସବୁ କଷ୍ଟ
ସବୁ ହସ, ଖୁସି ସ୍ୱାପ୍ନବତ
ସେଇ ଅନାଗତରଇ
ଉପକ୍ରମଣିକା । *

---

* "ଶତାବ୍ଦୀ"ରେ ପ୍ରକାଶିତ ।

# ଶିବାଗ୍ନି

(ମହାତ୍ମା ଗାନ୍ଧିଙ୍କ ହତ୍ୟା ଉପଲକ୍ଷରେ ଲେଖା)

ନାଲ୍ ମିରିଗର ଛାଲ ନୁହେ ଏହା ।
ନୁହଁ ବି ପକ୍ୱ ଫଳ ।
ଧନୁରେ ଯୋଖନା ଶର,
ଧନୁ ତୋ ଶିଥିଳ କର ।
ଆହା ! ଆହା !
ଏ କି ଛଳ ? ଏ କି ଛଲ୍ ?

ଏକି ଭ୍ରମ ?
ନୁହଁ ଭ୍ରମ ।
ଇଏ ମ୍ଳାନ ପାଂଶୁ ପ୍ରତିକ୍ରିୟା,
ନବେଲା କୁଂଜରେ ଜଳେ
ମଣିଷର ରକ୍ତର ନିଆଁ ।

ନୁହେଁ ସ୍ୱା ଏକକ, ନୁହଁ
ଜଣେକର ଭ୍ରମ ବା ଖିଆଲ,
ଇଯେ ମୃତ ଅତୀତର
ଶବ-କୀଟ,
ଝୁଣି ତାର ଗ୍ଲଲ
ଦେଇଛି ଦଂଶନ—
ଜୀବନର ବକ୍ଷସ୍ଥଳେ ଅନ୍ଧ
ଏଇ ଘୃଣ୍ୟ, ହୀନ ସଂଗଠନ ।

କହୁ କ୍ଷମା ?
ନୁହିଁ କ୍ଷମା ।
ଲୋଡ଼ା ପୁଣ୍ୟ, ପୂତ, ଶୁଭ୍ର କ୍ରୋଧ,
ଘୃଣାର ସକାଳ ଡାକେ
ଲୋଡ଼ା କ୍ରୋଧ, ଲୌଦ୍ର ପ୍ରତିରୋଧ ।
ଘୃଣାର କମଳ ଫୁଟେ
କ୍ରୋଧର ବିଜୁଳି ଛୁଟେ—
ଧ୍ୟାନଭଗ୍ନ ଶିବର କପାଳୁ—

ରକ୍ତର କ୍ରନ୍ଦନ ବାଜେ
କାତର କପୋତୀ ଭ୍ରାଜେ,
ତ୍ରାହି ମାଗେ ଝଡ଼ର କବଳୁ ।

ନାଇ ତ୍ରାହି.........
ନାଇ ନାଇ,
ରକ୍ତ ଝଡ଼
ହାଡ଼ର ନିଶୁଣି;
ପାହାଡ଼ର ଚନ୍ଧା ଚୂଡ଼େ
ବ୍ୟାଘ୍ର-ଗୁମ୍ଫା ତଳେ—
କାଁନ୍ଦେ କାଁନ୍ଦେ କରୁଣ ମୃଗୁଣୀ ।

ଜାଗେ କ୍ରୋଧ ନାଲ୍ କ୍ରୋଧ
ପଦ୍ମ-ମାଳ
କ୍ଷୁଭ୍ର ଛାଡ଼ି ନଭେ,
ଜନତାର ଐକ୍ୟ କଣ୍ଠେ

ଅଯୁତ କପାଳେ
ରକ୍ତ-ମାଳ
ଅଗ୍ନି-ଧନୁ ସ୍ତବେ ।
ଘୃଣାର କୃଷ୍ଣଚୂଡ଼ା.........
ନୂଆ ବର୍ଷରର ସନଦ ମେଲି
    ଆକାଶେ ଦେଲଣି ଉଡ଼ା ।

ଆମେ ଶିଖା            ଅଗ୍ନି ଶିଖା
    ଜ୍ୱଳ ଜ୍ୱଳ ତରଳ ଅନଳ ।
    ବଦ୍ୟୁତ୍‌ର ପିଚକାରି
    ଆମେ ଭସ୍ମ ଅର୍ଦ୍ଧାଙ୍ଗ ଈଶ୍ୱର ।

ଯେଉଁ ଗୃଧ୍ର ଦଳ—
ସ୍ପଷ୍ଟ ଭଳେ
କ୍ଷଣକ ସକାଶେ
(ହଁ, ହଁ କ୍ଷଣକ ସକାଶେ)
ଯୋଡ଼ାଇଲ ଆଜି ସୂର୍ଯ୍ୟ-ଦୀପ,
ତାରଇ ସନ୍ଧାନ କରୁଁ
ଧାଇଁ ତା'ର ପଛେ ଅଣଶ୍ୱାସେ ।
ପୁଣି ଏଇ ସସ୍ପୃହ
ଅସମ୍ଭବ ଅନ୍ଧକାର ବୁକୁ
ଦଳି ଛୁଟୁଁ ଆମେ ଆଗେ
ସମ୍ମୁଖୁଁ ସମ୍ମୁଖୁ ।

ସୂର୍ଯ୍ୟ କ କେବେ ମରେ ?

କ୍ଷଣଜୀବୀ ରକ୍ତରଶ୍ମି
ଜନ୍ମ ଦେବ ନବ ଉଦୟରେ ।
ଆମେ ସୂର୍ଯ୍ୟଶିଶୁ—
ଅଂଧାରର ଗର୍ଭ ଚିରି
ଛୁଟିଲୁ ଢେର
ଉଷାର ଜ୍ୟାମିତି
ଆମେ ଗଢ଼ି ଆଲୁଅର
ପରିଧିରେ ମିଶୁ ।

ଚାଲ, ଚାଲ, ଆଜି ସୂର୍ଯ୍ୟପୂଜା……… ।
ସୁନ୍ଦରୀ ତରୁଣୀ ଏଇ କୁନ୍ତୀ ଆଉ କୁବ୍‌ଜା
ପୃଥିବୀରେ, ନୂଆ ରୂପ
ନୂଆ ରୂପାୟନେ ।
ତାର ସମ୍ବୋଧନେ
ବାଜି ଉଠେ ଆମ ନାମ ସିନା !
ଦିନ ଗଣେ ଅଙ୍କର ଏ ଗାଣ୍ଡୀବହୀନ
ଗାଣ୍ଡୀବୀ ହସ୍ତଛନା ।

---

* ସହକାରରେ ପ୍ରକାଶିତ, ୧୯୪୮ ।

# ରକ୍ତବୀଜର ଅଭିଯାନ

ଚାଲ୍ ରକ୍ତବୀଜର ଦଳ
ସୂର୍ଯ୍ୟାଗ୍ନି ଧୌତ ସୀମାଚଳ
ନାଲ୍ ତୁମ ପ୍ରଣାମେ ।
ଚାଲ, ଭୈରବ, ଚାଲ ଚଞ୍ଚଳ !
ଚାଲ, ଚାଲ ।
ମନେରଖ,
ମନେ ରଖ ଆମେ
ଶେଷ ଦେବକୀର ଗର୍ଭ ବିଦାରି
ଶେଷ କାରାଗାର ବକ୍ଷ ବିଦାରି
ହୋଇଅଛୁଁ ଜନମ ।
ନୂଆ ଯୁଗ ଖସଡ଼ା
ରଚେ ଆମ ବଲ୍ଲମ ।
ନୂଆ ଯୁଗ ଚେହେରା
ଲେଖେ ଆମ କଲମ ।
ଚାଲ ଦକ୍ଷିଣେ ବାମେ, ବାମେ, ବାମେ ।
ଶେଷ ଦେବକୀର ଗର୍ଭ ବିଦାରି
ଜନ୍ମିଛୁ ମନେ ରଖ ଆମେ ।

----

ଲକ୍ଷ ଭାଇ ରକ୍ତ ଯୋଗାଇଛୁଁ
ଏତେ ଦିନ
ଖାଙ୍କୁଡ଼ା ତ ହୋଇ ନାହିଁ ମିଶା ।

ସଦ୍ଭାବନାର କି
ଭାଙ୍ଗିଲା ଅଭିମାନ
ଶେଷ ହେଲା ଧନାନ୍ଧୀ ଓଷା ?
ଆଜ ନୁହେ, ଆଜ ନୁହେ, ଆଜ ନୁହେ ।
ଗୁହିଁ ଦେଖ ଛଳ ଛଳ ପ୍ରଭାତର ମୁହେଁ ।
ଗୁଲ, ଗୁଲ ପାର ହୋଇ
ଜନପଦ, ଗ୍ରାମେ
ଶେଷ ହେବଣାର ଗର୍ବ ବଢାଇ
ମନେ ରଖ ଜନ୍ମିଛୁଁ ଆମେ ।

ଆମ ପଛେ ଶୃଙ୍ଖଳ, ଆମ ପଛେ
ସପନ,
ରହୁ ରହୁ କାନ୍ଦେ ବୃନ୍ଦାବନ ।
ସ୍ୱସ-ମୟୂର ଆମ ପଛେ କରେ
କୂଜନ ।
ସ୍ୱର୍ଣ୍ଣ ଶୂକ ଡାକେ ଧର ନାମେ ।
ଶେଷ ହେବଣାର ଗର୍ବ ବଢାଇ
ଜନ୍ମିଛୁଁ ଧରାତଳେ ଆମେ ।
ସାମନାରେ ବୁଭୁକ୍ଷିତ ଜନତାର
ଇସାର,
ଆଖିତଳେ ଆଷାଢ଼ର ଅବରାମ
ଅସର ।
ବଂଶୀ ଟୋ ରଖି ଦେଇ
ହେ' ରଣ ଡାକର

ଗୃଲ ଶୋଷ୍ଯାବି !
ଜାଣି ଶେଷ ଯାମେ ।
ଶେଷ ଦେବକୀର ଗର୍ଭେ
ମନେ ରଣ ଜନ୍ମିଛୁଁ ଆମେ ।

ଗୃଲ, ଗୃଲ ।
ହଳଧର
କୃଷାଣର ନେତା ହେ !
ଦାଅ, ହଳ ମୁଗୁରବେ
ତ୍ରିଭୁବନଜେତା ହେ ।
ମଜଦୁର ଗୃଷୀ ନୁହେଁ
କ୍ରୀତଦାସ,
ନେତା ସ୍ୱେ ।

ଜଗତକୁ ନୂଆ କର ଗଢ଼ ଆଜ୍ଞା ବାମେ ।
(ନୁହିଁ ଖାଲି ନାମେ)
ଦକ୍ଷିଣ ଗୃଲ ବାମେ, ବାମେ
ଶେଷ ଦେବକୀର ଗର୍ଭ ବଦାଇ
ମନେ ରଣ ଜନ୍ମିଛୁ ଆମେ ।

---

'ଶତାବ୍ଦୀ' ରେ ପ୍ରକାଶିତ ୧୯୪୮ ।

# ୟୁ. ପି. ରେ ସଂଧ୍ୟା

ସଂଧ୍ୟାର ଶୀତଳ ଆତ୍ମା
କୁଂଠିତ ଏ ଗ୍ରାମର ବଢାପେ;
ଗଙ୍ଗାର ସୁରଭି ସାଙ୍ଗେ
ଶିରିଷର
ଲଜ୍ଜା ଭସି ଆସେ ।
ଦ୍ରୁତ ମୋର 'ଏରୋପ୍ଲେନ
ପ୍ରକୋଷ୍ଠର
ଝର୍କାରେ ଦିଶେ—
ଅତି ଦୂରେ ଯବ ଖେତେ
ସଜ ସ୍ଥଇ
କେଉଁପର ମିଶେ ।
ଆହ୍ଲନ୍ତି ତଳକୁ ଖସି
ଦେଖେ ଶ୍ୟାମ
ଗଂଗାର ମୃଉତା
ନୂତନ ପ୍ରାଣର ସ୍ପର୍ଶେ
ହସି ଉଠେ
ଏ ମଣିକର୍ଣ୍ଣିକା ।

ଇଥାର୍-ମାଲମ ପଥ,
ଧୂମାସ୍ତୃତ,
ଖର, ଦ୍ରୁତ ଯାନ

ବାୟୁଗଣ ନସ୍ତ, ବ୍ୟସ୍ତ;
ଗୋଧୂଳିରେ
ମଳିନ୍ ଇଶାନ୍ ।
ନାଚନ୍ତେ ଗହମ ବିଲ
ଦାଢ଼ ଦାଢ଼େ
ଗହମ ରଂଗର
ନିର୍ଜନ ଗୃଷୀର କନ୍ୟା,
ଗଂଗାଜଳେ
ଦୁଧ ଅଳତାର
ସଂଧ୍ୟାର ଜୁଆର ଖେଳେ,
ଉଡ଼ିଯାଏ
ତୀକ୍ଷ୍ଣ ଶଂଖଚିଲ,
ଏଥର, ଏଥର ଖାଲି
ଯବ ଆଉ
ଗହମ ଫସଲ,

ନିର୍ଜନ ପଲ୍ଲିର ପଥେ
ଝେଉଁଜଉଡ଼
ଗଛର ଶାଖାରେ
ପକ୍ଷୀଟିଏ ପୁଚ୍ଛ ମେଲେ,
ପାଖେ ତାର
ଟେଲିଗ୍ରାଫ୍ ତାରେ
ଅସ୍ପଷ୍ଟ ଗୁଂଜନ ଉଠେ,
ବାର୍ତ୍ତା ଛୁଟେ
ବିଦ୍ୟୁତ୍ ବେଗରେ

କାହାର ସଂବାଦ ଯାଏ ?
କୀ ବାର୍ତ୍ତା ? *
କେ ସଂକେତ କରେ ?

କିଛି ଦୂରେ ପଦ୍ମ ଜଳେ
ସ୍ନାନ କରେ
ଗ୍ରାମର ଢିଲ୍ଲପୀ,
ଏଇ ବୋଧେ ଶୁଭଦୃଷ୍ଟି !
ଏଇ ବୋଧେ'
ଶ୍ୟାମଘନ ଯୁ. ପି ।

ତା'ପରେ ମାଟିର ଗଂଧ,
ନଗରର
ଦୀର୍ଘ ପରିକ୍ରମା,
ଏତେ ଦେଖି ମନେ ହେଲା
କିଛି ମୁଁ ତ
ଦେଖି ନାଇଁ ଜମା !

---

* (କୀ—'କି' ର ଦୀର୍ଘ ଉଚ୍ଚାରଣ ଦୃଷ୍ଟିରୁ ଏଠା 'କୀ' ଲେଖାଯାଇଛି ।)
"ନବଭାରତ"ରେ ପ୍ରକାଶିତ—୧୯୪୬

# ୧୫, ଅଗଷ୍ଟ, ୧୯୪୯

୧୫, ଅଗଷ୍ଟ ............ ।
ଚେତେହବ ତା ମନେ ଆଜ ଦେଖାଯାଏ ସ୍ପଷ୍ଟ ।
ମନେ ପଡ଼େ ତାର ପୂର୍ବ ରାତିର କଳ୍ପନା......
ପୋହୁହାଁ ଉଷାର ଆଗ ରାତି ଉନ୍ମାଦନା... ..
ଆଜ ସେଇ ମାଲ ମଲ ସ୍ୱପ୍ନର ଝରଣା
ତୀରେ ତୀରେ ହୋଇ ବାଟବଣା
କେମିତି ମୁଁ ଧାଇଁଥିଲି ବୁଲି;
ଲକ୍ଷ ଲକ୍ଷ ରଂଗୀନ ସାପର ଫଣା
ମନେ ମନେ ତୋଳିଥିଲି କେମିତି ମୋ'
ସେ-ଦିନର ଆକାଶୀ କଳ୍ପନା ! !

ହେଉଥିଲି ମନେ—
କାଲିଠାରୁ ମୁକ୍ତ ଆମେ, ଆମେ ବାଧାହୀନ,
ପଶୀ ପରି ସ୍ୱାଣୀନ, ସ୍ୱାଧୀନ;
ମୁକ୍ତ ଆମେ ଯେମିତି ଏ ସାଗରର ମାଛ,
ତୀର୍ଯକ୍ ତେଣୋରେ ଶଇ ପାଣିର ଦାହାର,
ନକ୍ସା କାଟି ଢେଉ ଢଳେ
ଚହଲାଇ ତରଂଗର ଆଁଚ,
ଲୁଚି ଯାଉଁ, ଭାସି ଉଠୁଁ, ଖେଳି ବୁଲୁଁ ପୁଣି
ଲବଣ ବତାସେ,
ନିଃଶ୍ୱାସରେ ଚମକାଇ ପାଣିର ଘୁଜଣୀ,
ନିଭଯାଉଁ ପ୍ରାଣୀନ ଉଚ୍ଛ୍ୱାସେ,
ମନେ ପଡ଼େ ସେ-ରାତିର ହରତ ରୋମାଞ୍ଚ ।

ଇତିହାସର ସେ ରକ୍ତ ତାରିଖ
ବହ୍ନିମାନ ଶିଖା ପରି ଜଳେ ।
ଆକାଶ ତଳେ
ରଜନୀଗନ୍ଧା, ଶିମୁଳି ଫୁଲ,
କଦଳୀପତ୍ର ଓ ଶ୍ୱେତପଦ୍ମର ପତାକା ଉଡ଼େ ।
ତଳେ ଭଗ୍ନ ମନ୍ଦିର ଚୂଡ଼ାରେ
ଭାସମାନ ହଂସମିଥୁନର
ଗତିକୋଣ
ଆଗାମୀ ସଭ୍ୟତାର ପ୍ରତୀକ ଗଢ଼େ ।

ବତାସରେ ନୂଆ ଫଳ, କସଲୟ ଆଉ
ମଣିଷର ଝାଳୁଆ ଦହର ଗଂଧ,
ରକ୍ତଗୋଲାପ,
ଶୋଲ ଓ କାଗଜଫୁଲର ମର୍ମର,
ଶୋଲର ଫୁଲର ହାର୍ଦ୍ୟରେ ଝଲସେଲ ।
ଗୋଦୁଗ୍ଧ, ଚନ୍ଦନ, ଆଲକାତରା ଓ ଅଗୁଆ
ଗୁଗୁଳ ବାସ୍ନାରେ,
ମହକ ଉଠୁଛି ସାରା ସହର ।

ମନେ ହୁଏ ଗାଈ ଆଜି ଦୁଗ୍ଧବତୀ,
ଫଳବତୀ ଅସଂଖ୍ୟ ଔଷଧି ।
ଆକାଶେ ପବନେ ଏ କି ଉତ୍ସବ ?
ସବୁରି କଣ୍ଠରେ ଅଗଷ୍ଟର ସ୍ତବ ।

ଆକାଶର ମେଘଭେଲାଙ୍କୁ ତଳେ
ସେଇ ଏକ ଉଡ଼ନ୍ତା ହଂସର ଗତିଚଞ୍ଚଳ
ଡେଣାରେ,
ସେ କି ସ୍ପନ୍ଦନ ?
ନୂଆ ଶସ୍ୟର ଆଘ୍ରାଣ ଆସେ,
ନୂତନ ଫସଲର ଆବାହନ,
ନୂଆ ଧାନ ଆଉ ମଣିଷର ଝାଳ,
ସ୍ନାନପୂତ ଦେହର ସୁରଭି,
ପୁଣି ପେଟ୍ରୋଲ ଓ କସ୍ତୁରୀ ବାସ୍ନାରେ
ଭରି ଉଠୁଛି ଚଉଦଗ ।
ସପ୍ତର୍ଷିର ନୀଳ ଉପତ୍ୟକା ତଳେ
ସାତ ରଂଗର ହୁଂଦୋଳ ।
ରଂଗର ସଂଚୁଦୋଳ ! !

•

ଶୁଣ ଶୁଣ ଉପରେ……
ମେଘୁଆ ସକାଳର, ନୂଆ ମେଘର
ମେଘମଲ୍ଲାର,
ପୃଥିବୀରେ ନୂଆ ଯୋଜନା,
ନୂତନ ଶସ୍ୟର ମାନଚିତ୍ର
ସବୁଜ ମନର ନବୀନ ଚହାଣରେ
ନୂତନ ଫସଲର ଆମଂତ୍ରଣ ।

ନୀଳ ବନର ବନ୍ଦର ଭେଦିଁ
ହଜାର ହଜାର ପକ୍ଷୀର କାହାଙ୍କ……

ଚଢ଼େଇଙ୍କ ମେଳା......
ସେମାନଙ୍କ ଲଘୁଡେଣାର କଂପନ,
ଲଘୁ ପୁଚ୍ଛର ମାସ୍ତୁଲ .....
ଶାଳବନର ମୁଣ୍ଡାଣ ଡେଇଁ
ଭାସି, ଭାସିଯାଏ...... ।
ନୁହେଁ ଭୁଲ, ନୁହେଁ ଭୁଲ ।
ପବନ ଅନୁକୂଳ,
ଭାସିଯାଏ ପକ୍ଷୀର ଜାହାଜ,
କପୋତ ଓ ବାଜ
ଛିନ୍ନ ଓ ତୀକ୍ଷ୍ଣ ଶୃଙ୍ଖଳ
ପ୍ରାଣରେ ପାଇ ନୂଆ ଜୀବନର ନିମଂତ୍ରଣ
ଭାସି ଭାସି ଯାଏ ।

ଭାସିଯାଏ କପୋତ ଓ ବାଜ
ପକ୍ଷୀର ଜାହାଜ ।
ନୀଳ ବନ ଶାଳବନ ପାରେ
ପ୍ରାଣର ଜୁଆରେ ।

ମନର ପକ୍ଷୀ ଜାଗେ,
ନୂତନ ଫସଲ ଡାକେ ।
୧୫, ଅଗଷ୍ଟ ତା'ର ସମ୍ବୋଧନ ।
ଚଢ଼େଇକ ଆକାଶର
ଶୁଭ ନିମଂନ୍ତ୍ରଣ । ! *

---

*ସ୍ୱକାରରେ ପ୍ରକାଶିତ ୧୯୪୯ ।

# ଦୋଳ ପୂର୍ଣ୍ଣିମା

ଫୁଟେଇ ଜହ୍ନ, ଫୁଟେଇ ଜହ୍ନ
ଦୋଳ ପୂନିଅ ଜହ୍ନ ।
ଘରେ ରହୁ ନାଇ ମନ ।
ନେଳି ନେଳି ଆକାଶ ଦେହେ
ଫଗୁ ପୂନିଅ ଜହ୍ନ ।

ପୃଥିବୀର ରଂଗମହଲେ
ନୂଆ ଫୁଲର ଲୀଳା,
ଫୁଲର ମେଢ଼
ଫୁଲର ଚଉଦୋଳା ।
ନେଳି ଘାସର ଜୂଆରେ ପୁଣି
ଫୁଲର ଫୁଲଝର,
ଘରେ ରହୁ ନାଇ ମନ ।
ଲୁହିଆଡ଼େ ନାନା ରଂଗର ମେଳା,
ରଂଗର ନିମଂତ୍ରଣ ।

ଦୂର ପାହାଡ଼ ଉପରେ ଉଠେ
ବଁହେଇ ନୂଆ ଚାଁଦ,
ମହାନଦୀ ବନ୍ଧ ଉପରେ ପକାଇ
ଧୀର ପାଦ

କଏ ସେଁ ଯାଏ
ଅଇଲା କାହୁଁ
ଅଜଣା ପଥିକ ?
କାଁଧରେ ତାର ସୁନା ସଇତା
ଗୋଡ଼ରେ ମାଡ଼ିଥାଏ
ରୁପାର କଟୋଭ୍ !!

କଦମ୍ବ ବନେ ଶୁଭିଲା ଦୋଳି ଗୀତ
ପୁନେଇ ଜହ୍ନ, ପୁନେଇ ଜହ୍ନ ମିତ ।
ଜହ୍ନିଫୁଲର ନରଣମୀ ଛଟକ
ଚାଁଦର ପଣାପାଲ୍ ।
ହସର ପିଚ୍କାରୀ ।
ଲାଗିଛି ଲୁଚକାଳି ।
ହଂସତମଧ ଯାଉଛି ଧରି
ଜହ୍ନର ସୁନାଥାଳି ।

ଷରୁ ଯେ ନାଭ ଓଷା ।
ଛହ୍ମ ଯାଇଛି ଗୁଜୁଲ ପୋଷେ
ପାଇଁ ଗୁଣ୍ଡୁଚିମୂଷା ।

ଧସ୍ବରେ ପଁଚୁଦୋଳ
ଆକାଶେ ଆଜୁ ବଢାସେ
ସାତ ରଂଗର ହୁଂଦୋଳି ।

ସବୁ ପାଦର ନୂପୁର ବାଜେ
ବଉଳ ଫୁଲ ନିଶା ଲାଗେ ।
ଅଶୋକ ଗଛେ ଧରୁଛ କଢ଼ି,
ଯଉବନରେ ଅପିଁଛ ବଢ଼ି ।
ବଉଳବସା ଦିନେ
ଝୁଲ ଗୋ ଝୁଲ ଝୁଲି—
ଦୁନଅଢ଼କା ଅମ ପୁଛୁଣା ନାମେ,
"ଅଶୋକା" ବୋଲି ଡାକବା ଅମେ
ସବସ୍ତରେ ଖାଲି ।

ଘର ଧରୁ ନାଇ ମନ ।
ଅସିଛ ଅଜ ଅସିଛ ଦୁରୁ
ରଂଗର ନିମଂତ୍ରଣ !!!

---

# ସ୍ୱପ୍ନଭଂଗ

ସାତ ଭାଇରେ ସେ ଭଉଣୀ ଏକା,
କନକ ଚଂପା,
ସାତ ସୁନା ଗଡ଼ ପାଣିରେ ତାର
ମାଣିକ ମହଲ ହୁଏ ଯେ ଲୁଘା !
ସାତ ସୁନା ଦୀପ ତା ପୁରେ ଜଳେ
ସାତ ସୁନା ଥାଳୀ ବନ୍ଧାଣେ ଲାଗେ,
ତାଳିମ ଦେଶର କନ୍ୟା ସେ ତ
ତା ପାଇଁ କ କଏ ରଜନୀ ଜାଗେ ?

ଭାନୁମତୀ ନଈ କୂଳକୁ ଯେବେ
ସ୍ନାହାନ ସକାଶେ କରିବେ ସେ ହେଲେ,
ଦରପଣ ବାନ୍ଧ ଘଣ୍ଟରେ ଏ ପା
ସାତ ସଖୀ ମେଳେ ଏକେଲା ସେ ଯେ !

ନଈ ଆର ତୁଠେ ବୁଲୁ ଯେ ଥିଲ
ବାହୁ ବାହୁ ମନପବନ ତସ୍ୱ,
ହଠାତ୍ କାହାର ଖବର ଧରି
ସୁନାର ପଦ୍ମ ଛୁଇଁଲ ତସ୍ୱ ?
ଢେଉ ନେଇ ଦେଲେ କମଳି କୋପେ
ସୁନାର ଫରୁଆ ରହସ୍ୟ ଲଗି,
ବାର ହାତ କେଶ ତା ମଧ୍ୟେ ଲୁଂଚି
ପଠାଇଛି କିଏ ସନ୍ଦେଶ କେ ସେ ?

ସେଦନୁ ଖୋଜିଲି, ନଗର, ପୁରେ,
ସେଦନୁ ଖୋଜିଲି ପ୍ରବାଳ ଦ୍ୱୀପେ,
କାଳିଆ ଘୋଡ଼ାର ଶଓ୍ ଆର ମୁଁ ରେ
ଖୋଜିଲି ଯେ ଦୂରେ, ପୁଣି ସମୀପେ ।

ଅନେକ ଦେଖିଲି ସଜଧ ଏକ
ହ୍ରଦ ପରି ନୀଳ ବୁକୁରେ ତାର
ନଦରେ ମୁଦଲା ପଦ୍ମ ଏକ
ଧରିଛି ସୁପ୍ତ ନିଶାର ପାରେ ।

ଝପଟାଇ ମନପବନ ଘୋଡ଼ା
ଆଗକୁ ବଢ଼ିବା ଆଗରୁ ଟିକେ
ଚିରିଲି କପାଳ, ଚିରିଲି ମୋର
ଚିରିଗଲା ହାତ କରତ ଦାଁତେ ।
ଝରିଲା ରକ୍ତ, ଝରିଲା ତଳେ
ଭୂଇଁରେ ଲୋଟିଲା ମୁକୁଟ ଖସି ।

ପଡ଼ିଲା ଝୋପାଏ ଲହୁ ତା ଗାଲେ
ସକାଳ ଶିଶିର ଯେମିତି ଫୁଲେ,
ଧୀରେ ଆଖି ଖୋଲି ଉଠିଲା ନେଶେଯ
ତାଳିମ ଦେଶର କନ୍ୟା ଶେଷେ ।

ହେଲା ହେଲାଁ ତାର ସ୍ୱପ୍ନଭଂଗ—
ଭିଡ଼ ମୋଡ଼ ହୋଇ ଅଳସ ଅଂଗ
ପଗୁଭଲା ହସି କିଏ ସେ ତୁମେ
ଭାଙ୍ଗିଲ କହ ଆଜ ମୋ ନିଦ ?

ଏତେଦିନ ତାଳି ଲକ୍ଷ ଅସର
ପାରିଲ ନି ଯାର ତୁଟାଇ ନିଦ,
ଶୋଣିତ ଟୋପାରେ ଉଠିଲା ଜାଗି
ଶୁଣି କି ଡମ୍ବୁର ଲଗା ବାଇଦ ।

ରକ୍ତେ ମୋର ତ ଉଠିଲା ଜାଗି
ତାଳିମ ଦେଶର କୁମାରୀ ଆଜ,
ପ୍ରଥମ ନାରୀର ନିଦ୍ରାଭଂଗ
ଗୀତ କି ତା' କାନେ ଉଠିଲା ବାଜି ?

---

# ପଦଧ୍ୱନି

କିଏ ଆସିବେ ଜାଣେ ନାହିଁ ।
ଜଣା ନା ଅଜଣା ?
ତଥାପି ଘନ ଗର୍ଜନ,
ଘନ ଗର୍ଜନ ନିର୍ଜନ କୁଟୀରେ ।
ମନେ ହୁଏ ପରିଚିତ ତାଙ୍କର ଠିକଣା
ପାଇଛି ମୁଁ ଖୋଜି ଏତେ ଦିନେ
ଲକ୍ଷ ଲକ୍ଷ ଭୋକିଲା ମୁହଁର ମାଂସପେଶୀରେ ।

ସେମାନଙ୍କ କରାଘାତ ଶୁଣାଯାଏ
ବହୁଦୂରେ ଫାଧାଇ ପ୍ରାଚୀରେ ।
ସେମାନଙ୍କ ପଦଧ୍ୱନି କାନପାତି ଶୁଣେ
ପ୍ରଭାତଫେରିର ଶୋଭାଯାତ୍ରାରେ, ବାରେ ବାରେ ।
ସେମାନଙ୍କର ଜୟ ନିଶାଣ
ଏଇ ଦେଖ ଉଡ଼େ—
ଉଡ଼େ ନୂତନ ସୂର୍ଯ୍ୟର ରାଜଧାନୀରେ ।

କିଏ ସେମାନେ ?
ଦାସ, ଦାସୀ, କର୍ମୀ, ଶିକ୍ଷକ,
କୃଷକ ଓ ମଧ୍ୟବିତ୍ତ
କାରଖାନାର ଲୋକ,
ଶ୍ରମିକ, ସୈନିକ,

କିଏ ଚଳାଏ ହଳ, କିଏ ଲଙ୍ଗଳ,
ସବୁ ଏକ ଦୀର୍ଘ ରାଜପଥର
ନାମହୀନ, ସଂଖ୍ୟାହୀନ ମୁକ୍ତ ପଦାତିକ ।
ଖାଲି ଏକ ବେନାମୀ ଅସ୍ତିତ୍ୱ ।
ମଣିଷର
ବହୁଧା, ବିଚିତ୍ର ମାନଚିତ୍ର ।
ମଣିଷର ମହାସାଗର
ସୀମାହୀନ, କୂଳହୀନ, ଉଦ୍‌ବେଳ, ଉଚ୍ଛଳ ।
ଦିଗନ୍ତ-ବିସ୍ତୃତ ।

ପ୍ରତ୍ୟେକର ପରିଚୟର ଚିହ୍ନ
ବୁକୁରେ ଧରି ଫୁଟି ଉଠିଛି ଆକାଶରେ
ମଣିଷର ସେଇ ମହା ଅରଣ୍ୟ ।
ଡାକ, ଡାକ,
ଜଣ ଜଣ କରି ଡାକ, ନାଁ ଧରି ଡାକ ।
ଜବାବ ଦବ, ଉତ୍ତର ଦବ
ସେଇ ସମଗ୍ରତା,
ମଣିଷର ସେଇ ମହା ଅରଣ୍ୟ,
ଢାକେ କାକେ ।
ଯୁଗେ ଯୁଗେ ଏହାହିଁ ବୋଧହୁଏ ତା'ର
ଜନ୍ମ-ଯାତ୍ରାର,
ଫେରି ଆସିବାର,
ଆଜି ଜନ୍ମି ହବାର ମାନେ । *

---

* 'ସଙ୍କେତ' ରେ ପ୍ରକାଶିତ କବିତାର ପୁନର୍ଲିଖନ । ୧୯୪୯

# ଶନିବାର ବେଳା ତନିଷ୍ଠାରେ

ତୁମେ ଯଦି ଆସିଥା'ନ୍ତ କାଲି ଦି'ପହରେ
ଶନିବାର ବେଳା ତନିଷ୍ଠାରେ,
କେତେ ଗପ, ହସଖୁସି,
କେତେ ଆଲୋଚନା
କରିଥାନ୍ତେ ଦୁହେଁ ଏକାନ୍ତରେ ।
( ଦକ୍ଷିଣ ଚତ୍ୱରେ )

କେତେ ଆଶା, ସ୍ୱପ୍ନ-ଗଢ଼ା,
ଭବିଷ୍ୟର ରଙ୍ଗୀନ୍ ଖସଡ଼ା
ରଚିଥାନ୍ତେ ଦୁହେଁ,
କେମିତି କାଟିବା ଦିନ
ତୁମେ, ମୁଁ ଜୀବନ
କରିଥାନ୍ତେ ଆଲୋଚନା
ଚାହିଁ ଚାହିଁ ପରସ୍ପର ମୁହେଁ ।

ତୁମେ ଯଦି ଆସିଥାନ୍ତ କାଲି ଶନିବାର
ହାତେ ଯେବେ ଥିଲା ନାଇ କାମ,
କି ସୁନ୍ଦର କଟିଥାନ୍ତା ! ସତେ କି ସୁନ୍ଦର !
ସମ୍ମୁଖରେ ଗୁ' ସରଂଜାମ
ପଡ଼ିଇ ରହିଲା !
ତୁମେ ତ ଆସିଲ ନାଇ କାଲି ଶନିବାର,
ଆସିଥିଲେ କ୍ଷତି କ'ଣ ଥିଲା ?

ଟିକ୍ ଟିକ୍ ବାଁଧ ଘଡ ଭେଟଜେମା କାଳର,
କହୁଗଲ୍ କାନେ—
"ସେ ଆସିବ ନାଇ ଜମା, ବୃଥା ଅନ୍ୱେଷଣ,
ପ୍ରତୀକ୍ଷାରେ ନାଇ କଛୁ ମାନେ ।
ବୃଥା ଏ ଅପେକ୍ଷା ତୋର, ମିଛେ ଅକୁଳତା,
ଜଜାଡ଼ୁ ତୋ' ହୃଦୟର ଗାଡ଼
ଅନ୍ୟ ଜନ ନାଇ ଆଉ ? ଏଇ କ କେବଳ ?
ପୃଥିବୀରେ ଏକମାନ୍ ସାଥୀ ?"
ତୁମେ ଯଦ ଆସିଥାନ୍ତ କାଲ୍ ଦ'ପହରେ,
ଶନବାର ବେଳା ଉନଟାରେ
କ ସୁନ୍ଦର କଟିଥାନ୍ତା ଛୁଟିର ପ୍ରଦୋଷ
ତୁମର ଓ ମୋର ଏକାନ୍ତରେ !!

ଫୁଲ୍ ତୁମେ ଭଲ ପାଅ ।
ରଖାଥିଲ୍ ତେଣୁ ମିସବ୍ୱିସ୍ଥ
ପୁଷ୍ପାଧାରେ
ବୁଗନୋଭିଲିଆ,
ନୀଳ-ରକ୍ତ, ନାଲ୍-ରକ୍ତ, ଗାଢ଼ରକ୍ତ କୋଷେ
ହସୁଥିଲ୍ ଫୁଲ ନଛଟିଆ,
ତୁମେ ଯଦ ଆସିଥାନ୍ତ ଚତୁର ଆଖିରେ
ଦୃଷ୍ଟାମିର ଶାଣିମା ନଗୃଇ
ଝରଣାର କୁଳୁ ହସ କଲ, କଲ, କଲ
ନାଲ, ଓଠ ତଳେ ପହଁଚାଇ

ବସିଥାନ୍ତ ଅସି ପାଶେ, "ନମସ୍କାର୍ .....
ଭଲ ଅଛ ବନ୍ଧୁ ?"
"ଦେଖା ହେଲା, ସୁଖୀ ହେଲି" କହୁଥାନ୍ତି,
ଶବ୍ଦ ଦେହେ ଜଡ଼ାଇ ମୁଁ ମଧୁ ।
କହୁ ତ ଆସିଲ ନାଇ ଶନିବାର ବେଳା ଉଦାଶାରେ
କି ସୁନ୍ଦର ଉଡ଼ାଇଥାନ୍ତା ଅସିଥିଲେ କାଲି ଦ'ପହରେ ?
ଟିକ୍ ଟିକ୍ ଡାକେ ଘଡ଼ି ମାନ୍ଧାତା ଯୁଗର
ଜେଜେମାଙ୍କ ଅମଳରେ କଣା,—
"ଆସିବ ସେ ନାଇ କେବେ ।
ଆଜ କେ କି ନାଇ ତାହା ବନା ?"

ସନ୍ଧ୍ୟାବେଳେ ଖୋଲା ପଇଦାନେ
ବୁଲିବାକୁ ଭଲପାଅ, ସେଥିପାଇଁ ଭାବଥିଲି ମନେ
ଯାଇଥାନ୍ତେ ଖୋଲା ବଲେ, ମୁକ୍ତ ପଡ଼ିଆକୁ
ନିଜେ ମୁଁ ଯେ ଚଲାଇ ଥାଆନ୍ତି
ମାଇ ମୋର ବୁଲ୍ବତି, ପାଶେ ତୁମେ ବୈଠା ମହାନ୍ତି ।
ଯାଇଥାନ୍ତେ ଦୂରେଁ ଦୂରେ ପାର ହୋଇ ସହରର ଛକ,
ବଲ ପଥେ ଅଙ୍କୁ-ଲତା ସଦ୍ମା ଧାରେ,
ମାଇ, ମାଇ ଫସଲର ଶ୍ଲୋକ
ଉଠେ ଯେଉଁଠାରେ,
ଲଘୁ ଅବସରଭରା, ଏକାନ୍ତ, ନିରେଳା
ଶନିବାସ୍ ସନ୍ଧ୍ୟାରେ ସନ୍ଧ୍ୟାରେ ।

କାନୁ ତ ଆସିଲ ନାଇ, ଦରଜାରେ
ଘୋଟେ ଏକ କରାଘାତ ଲାଗି
ଚୁଡ଼ିର ଟିକିଏ ଶବ୍ଦ—
ପଦଧ୍ୱନି—
ଶୁଣିବାକୁ ଥିଲି କେତେ ଜାଗି ! !

ତୁମେ ତ ଆସିଲ ନାଇ, ଭୁଲି ଗଲ ?
ଏତିକି ଚଂଚଳ ?
ତୁମେ ଯଦି ଆସିଥାନ୍ତ ଶନିବାର
ସ୍ତବ୍ଧ ଦ୍ୱିପ୍ରହର
କେତେଡ଼େ ଭଲ ଲାଗିଥାନ୍ତା ! ହୋଇଥାନ୍ତା ସତେ କି ସୁନ୍ଦର !
ଘଣ୍ଟି କହେ "ଆଜ କେହୁ ନାଇ କି'ଣ ?
ସେଇ ଏକା—ଜଣକ କେବଳ ?"*

---

* ( ମୋର ବନ୍ଧୁ ବମେର ଅଦ, କେ, ସେଠ୍‌ଙ୍କର ଏକ କବିତା ପଢ଼ି )

# ହୋଲି, ୧୯୪୯

ରଙ୍ଗୀନ୍ ଓଢ଼ଣା ଖୋଲି
ଆସିଥିଲା କାଲି ହୋଲି,
ଅଗୁରୁ, ଅବୀର,          ରେନ୍‌ବୋ' ରଙ୍ଗର
ଧୂଳିର ତୋଫାନ ତୋଳି ।
ଆସିଥିଲା କାଲି ହୋଲି

ଆସିଥିଲା ଫଗୁ ହୋଲି
ହୀରା, ମର୍କତ,          ନୀଳା, ହାତୀଦାଁତ
ରୁବିର ମୂରୁଜ ବୋଳି ।
ଗୋରଚନା ଆଉ          କସ୍ତୁରୀ ସଁକେ
କୁଂକୁମ ରସ ଗୋଳି ।
ଆସିଥିଲା କାଲି ହୋଲି ।

ଆସିଥିଲା କାଲି ହୋଲି
ଦୁଧ ଅଳତାର          ତନୁ ତନ୍ତୁ ଧୀରେ
ମୟୂରପଁଖୀ ଖୋଳି ।
ଧାସେ ଧାସେ, ଲୋମେ          ଚହଟାଇ ଦେଇ
ବିଜୁଳିର ପିଚ୍‌କାରୀ ।
ଆସିଥିଲା କାଲି ହୋଲି ।

ଆସିଥିଲା କାଲି ହୋଲି

ସିନ୍ଦୁର ଆଜ ଜଳଧାର ସ୍ରୋତେ
ସକାଳ ସ୍ନାହାନ ସାରୁ
ଯାଇଥିଲେ କାହିଁ ଚଢ଼ି କ୍ଷଣ ପାଇଁ
ମନପବନର ଡଙ୍ଗୀ ?
ଆସିଥିଲା କାଲି ହୋଲି ।

ଆସିଥିଲା କାଲି ହୋଲି
'ନଗରର ନଟୀ' ଶୀର୍ଣ୍ଣ ଓଠରେ
ଫୁଟାଇ ରକ୍ତ କଳି ।
କ୍ଳାନ୍ତ ପ୍ରାଣରେ ବରଷି ବିଜୁଳି,
ଅର୍ଥର ଶୋକ ହର,
ଅଗୁରୁ ଅତର ବୋଳି ।
ଆସିଥିଲା କାଲି ହୋଲି ।

ଆସିଥିଲା କାଲି ହୋଲି
କାରଖାନା ଆଜ ରାଜପଥ ସ୍ଥିର
ରେଶମୀ ଫଗୁର ଧୂଳି ।
ନଗରର ବୁକେ ବୁଲାଇ ଦେଇ ତା
ପୀତ-ଜାଫ୍ରାନ ତୂଳି ।
ଆସିଥିଲା କାଲି ହୋଲି ।

---

# ତାଜମହଲ୍

(୧୯୪୮ ଅକ୍ଟୋବରରେ ଆଗ୍ରାରେ ତାଜମହଲ ଦେଖି)

ତାଜମହଲର ମିନାରେଟ୍ ପ୍ରଦକ୍ଷିଣ କରି
ଉଡ଼ ବୁଲୁଥିଲା ଏକ ହଂସ ।
ଯମୁନାର ନୀଳ ସ୍ରୋତ ଉପରେ ଛାଇ ପକାଇ,
ନକ୍ସା କାଟି ଆଉ କାଟି ଅସଂଖ୍ୟ ଛକ ।
ଧ୍ୟାନ ଭାଙ୍ଗିଗଲା ।
ଏକ ଶବ୍ଦାୟମାନ ବସ୍
କି ଏକ ନିର୍ଜନ ଟ୍ରକ୍‌ର ଶବ୍ଦରେ ।
ଉଡ଼ିଗଲା ସେଇ ରାଜହଂସ କଳ-ଧ୍ୱନି କରି ।
ଦୁଇଟି ବଉଳ ଧ୍ୱନି ପରସ୍ପରକୁ
ଅନୁକରଣ କରି ଭାସିଗଲେ,
ଦୁଇଟି ବଉଳ ପକ୍ଷୀ ପରସ୍ପରର ପାଖ କାଟି ଦେଇ
ଉଡ଼ିଗଲେ ।
ମୋ ଦୁଇ ମନର ବ୍ୟବଧାନ ଡାଙ୍କି
ତାଜର ଉଦ୍ୟାନ,
ତାର ପଦ୍ମାଙ୍କିତ ଜଳାଧାର ।
ଏକ ଗ୍ରାମ୍ୟ କୁମ୍ଭକାରର
ମୃତ୍ ପାତ୍ର ନିର୍ମାଣର ଛନ୍ଦ
ଧ୍ୱନିତ ହୋଇଥିଲା ଯେମିତି ଏଇ ଶ୍ୱେତ ମାର୍ବେଲର
ମହାକାବ୍ୟରେ—
ପ୍ରଥମେ ବନ୍ଧ୍ୟୋଗୀ ଓ ପରର ମିଳନୀ ଛନ୍ଦରେ

ଶାହାନ୍‌ସାହା ବାଦସାହାଙ୍କ ପ୍ରେରଣାରେ ।
ଦୁହେଁଇ ତ ରୂପକାର,
ବ୍ୟବଧାନ କେବଳ ଦୁଇ ମନର ଛାଞ୍ଚରେ,
ଦୁଇ ମନ ଓ ଦୁଇ ପରିବେଶର
ପରସ୍ପରକୁ ଅତିକ୍ରମ କରି ଚାଲି ଯାଇ
ପୁଣି ଶେଷରେ ଖୋଜି ପାଇବାର ପରିଣତିରେ ।
ଏକ ବିସ୍ମିତ ଓ ସ୍ୱପ୍ନିଳ ସତ୍ୟରେ ।

ତାଜମହଲର ଉଚ୍ଚ ମିନାରେଟ୍‌ ପାଖରେ
ଛିଡ଼ା ହୋଇ ଦେଖୁଥିଲି—
ପ୍ରାକ୍‌ସନ୍ଧ୍ୟାର ଅସ୍ତଯାଁ ଗୋଧୂଳି,
ଦୂରରେ ଆଗ୍ରା ଦୁର୍ଗର ମଣିମୟ ପ୍ରାସାଦ,
କାଶ୍ମିରି ମୃତ୍ତିକାରେ ତଆର
ଅଙ୍ଗୁର ଓ ଆଖ୍‌ରୋଟ୍‌ର ବାଗ ।
ଯେସ୍‌ମିନ ଟାୱାର,
ଲଳା ନକସାରେ ଗଢ଼ା ମସ୍ତ୍ୟଣୀବାରର ଚତ୍ୱର,
ଓ ମୋତି ମସଜିଦ୍‌ର ଚୂଡ଼ା ।
ପୁଣି ସୁନା-ଛାଉଣି ମଖମଲର ସୁଆର
ରାଜକୁମାରୀଙ୍କ ଆଁଖ-ମିଚୁଲି ଘର,
ଲାଲ୍‌ ନୀଳ, ସବୁଜ ପଥରର ଶୁଆ, ସାରି,
ଆଉ ଦେୱାନ ଖାସ୍‌ ଓ ଦେୱାନ ଆମ୍‌ର
ବହୁବର୍ଣ୍ଣ ଦରବାର,
ମିଣସାସ୍ତୁ ଆଇଭି ଲତାର ରଂଗୀନ୍‌ ଖୋଦନ,
ଛତ୍ରଶଦରେ ପାରସ୍ୟର ପକ୍ଷୀର ନର୍ତ୍ତନ ।

ଏ ସମସ୍ତ ଭିତରେ ସେଇ ନିର୍ଜ୍ଜନ, ଅତି ନିର୍ଜନ
ମଣି ଜଡ଼ିତର ମୁକ୍ତ ଅଳିନ୍ଦ
ଶେଷଦେଖାର ସ୍ଥାନ,
ଯାର ସ୍ତମ୍ଭର ପ୍ରତି ସ୍ଫଟିକରେ
ତାଜମହଲର ନୀରବ ପ୍ରତିଫଳନ……
ବହୁ ଦୂରରୁ……ବହୁ ଦୂରରୁ……
ସବୁ ଏକ କୁହୁକ,
ସବୁ ଏକ ସ୍ୱପ୍ନ ଦେଖାର ଇନ୍ଦ୍ରଜାଲ !

ଧୀରେ ଧୀରେ ଚନ୍ଦ୍ର ଉଠି ଆସୁଥିଲା
ଯମୁନାର ନୀଳ ଜଳରେ ଲକ୍ଷ ଦୀପ,
ସ୍ଫଟିକ ଓ ପ୍ରବାଳର ଦୀପ,
ନୀଳ ଦୁଧରେ ଧୁଆ ଧୋବ ଫରଫର ସୂତ,
ମନେ ହେଲା ଦୂରଆଡ଼େ ଏକ ଅଶରୀରୀ
ବିରହିଣୀ ନାରୀର ଆତ୍ମା,
ଶୀର୍ଣ୍ଣ ଦେହରେ ତା ଗଂଗା-ଯମୁନା ଶାଢ଼ୀ ।
ଭିଜା ସ୍ତନ ତଟେ ହଂସମିଥୁନ ଅଂକା ।
ସାଦା ସାଦା ପାଲ୍ ତୋଳି ଭାସିଯାଏ ଅକଳନ ନୌକା,
ସବୁଜ ଜହ୍ନର ଉପତ୍ୟକାରୁ
ମନେ ହେଲା କେଉଁ ହଂସ ଆଣିଛି ଏକ ଚିଠି—
ସେଥିରେ ଲେଖା ଅଛି ଦୁଇ ବିରହୀ ପ୍ରାଣର ଠିକଣା ।
ମିଳନରେ ବିରହର ଅନ୍ତିମ ମୂର୍ଚ୍ଛନା ।
ଜହ୍ନ ଆସୁଥିଲା ଧୀରେ ଧୀରେ ଉଠି, ଉଠି ।

କେତେ ବିରହ, କେତେ ଅଶ୍ରୁ କେତେ ହାହାକାର,
ଯୁଗ ଯୁଗର କେତେ ଦୀର୍ଘଶ୍ୱାସ, ପ୍ରାଣର ଉଚ୍ଛ୍ୱାସ,

ସବୁ ଯେମିତ ଶେଷରେ ମିଶି ଏକାକାର
ହୋଇ ଯାଇଛ ମୃତ୍ୟୁରେ,
ପାଖାପାଖି ଏଇ ଦୁଇଟି କବରର ଶେଷ ନିର୍ଜନ ଶଯ୍ୟାରେ ।
ଏଇ ବିରାଟ ମାର୍ବେଲର କାବ୍ୟ ଯେପରି
ସେଇ କେଇ ଟୋପା ଅଶ୍ରୁରଇ ରୂପାନ୍ତର !
କିନ୍ତୁ ସବୁ ବିରହ, ସବୁ ଆନନ୍ଦ
କାଳର ପ୍ରାଙ୍ଗଣରେ ମିଶି ହଜି ଯାଇଛି ଶୂନ୍ୟରେ !
ତେଣୁ କହେ—ମଣିମୟ ନିର୍ଜନ କବର !
ତୁମେଇ ନ ପୁଷ୍ପଶଯ୍ୟା ବରବର ଆଜ ମିଳନର ।
ଆଜ ହେ ମଧୁର ଗଂଧବହ ସୁରଭିତ ମୃତ୍ୟୁ !
ଜାଣି ତୁମେ କେତେ ଇନ୍ଦ୍ରଜାଲ !!

ଯମୁନାର ଦୁଇ କୂଳେ ଧାରେ—
ହେମନ୍ତର ସ୍ତବ୍ଧ ନିକଷ ରାତ୍ରି—
ମନେ ହେଲା ମୁଁ ଏକ ମୁସାଫିର
ମୁଁ ଏକ ସଙ୍ଗୀବିହୀନ ଯାତ୍ରୀ ।

ମୁଁ ଯେମିତ ଖୋଜି ବୁଲୁଛି, ପାଇ ନାହିଁ ।
ମୋର ସେଇ ଖୋଜିବୁଲିବାରଇ ସୃଷ୍ଟି ଏଇ
ମାର୍ବେଲ-ସଂଗୀତ ।
ମନେ ହେଲା ମୁଁ ଯେପରି ଶାଜାହାନ୍
ଆଉ ପ୍ରିୟା ମୋର ଏଇ ଶ୍ୱେତ
ସ୍ୱର୍ଣ୍ଣ ମର୍ମରର
ମାଣିକ ମହଲ ।

---

# ପରିଚୟ

I never forget a face
But I always forgot the place
Where I first saw a face. —'Surrealism'
—Sett.

ପ୍ରଥମରେ କେବେ ତୁମ ସାଙ୍ଗେ ହେଲା ଦେଖା
ମନେ ପଡ଼େ ? ମନେ ପଡ଼େ ?
ବହୁ ଜନ ମେଳେ ତୁମେ ଥିଲ ଖାଲି ଏକା,
ମୁଁ ଥିଲି ଏକାକୀ ଲକ୍ଷ ମଣିଷ ଭିଡ଼େ ।
ସାମନାରେ ମୋ' ତୁମେ ଥିଲ ଆସି ବସି,
ତା' ପରେ ହଠାତ୍ ଗୁଲିଗଲ କାହିଁ ଝଟି
ଯେମିତିକା କେଉଁ ସାଗରରେ ଯାଏ ମିଶି
ହଜିଗଲ ତୁମେ ଜନତାର ପାରାବାରେ ।
ଦୁଃଖ ଲାଗିଲା ପଚାରିଲି ନାଇ କଥା
ପରିଚୟ ତମ,—
"ଜାଣିପାରେ କି' ମୁଁ ନାମ ?"
ଲିଭିଗଲ ତୁମେ ଲକ୍ଷ ଲୋକର ମେଳେ,
ସଙ୍ଗୀତ ପରି ବତାସରେ ଧୀରେ ଧୀରେ······
ମନେ ନାଇ କେଉଁ ମେଳା ନା ନାଟକ ଘରେ
ନା ପ୍ରଦର୍ଶନୀର ଭିଡ଼େ !

ଲହରୀ ଯେମିତ ସମୁଦ୍ରେ ଯାଏ ମିଶି,
ମିନଟିକ ପାଇଁ ଅସ୍ତ କୀରଣେ ନାଶ,
ଇନ୍ଦ୍ରଧନୁର ଓଢଣୀର ଅଂଚଳେ
ତୁମେ ସେଇପରି ମେଘଗହଳରେ ଲୁଚି
କୁଆଡ଼େ ଯେ ଗଲ ପାଇଲିନି ଖୋଜି ଖୋଜି
ସଂଗୀତ ପରି କାହିଁ ଗଲ ତୁମେ ହଜି ?

ହୁଏ ତ ଭେଟିବା ପରସ୍ପରକୁ ଆମେ
ହଠାତ୍ କେଜାଣି କେତେଦିନ ପରେ କାହିଁ
ସହରର କେଉଁ ଗଳିରେ ବା ମଇଦାନେ
କେଉଁ ପ୍ରୀତିଭୋଜ ଅବା କେଉଁ ଦୋକାନରେ
ଅଥବା ଗ୍ଲୁ'କ ସରବତ ଷ୍ଟଲେ ଦେବେ
ଗ୍ୟାସ ଆଲୁଏ ନରେଲା ରାତିରେ କାହିଁ ?
ରଖିଥିବ ମନେ ମତେ କି ନା ଜାଣେ ନାଇ
ମୁଁ କିଂତୁ ତୁମକୁ ମିନଟିକେ ନେବି ଚିହ୍ନି ।

ସ୍ଥାନ ଓ କାଳ ରହେ ନାଇ ମୋର ମନେ ।
କେଉଁଠି କାହାକୁ ଦେଖିଥିଲି କେଉଁଦିନ ।
ମନେ ରହେ ମୁହଁ, ମନେ ରହେ ଆଖି ପତା,
କରୁଣ ଆଖିର ଛଳଛଳ ରହେ ମନେ ।
ସ୍ମରଣ ରଖେ ମୁଁ ଦେଖିଛ ଯଦବା କେବେ
ଟରଗମୀ ଫୁଲର ସୁନ୍ଦର ତନୁ-ଲତା ।

ଦେଖାହେଲେ କିନ୍ତୁ ପଚାରିବ ଏଇଥର—
“ବହୁ ଦିନ ପରେ ଦେଖା ହେଲା, କର କ୍ଷମା—
କି ନାମ ପାରେ କି ଜାଣି ମୁଁ ସଖ୍ୟକାମୀ,
ଏତେଦିନ ମୋର ସ୍ୱପ୍ନର ଶିରୋନାମା

ତୁମେଇ ଯେ ଥିଲ—
କର କ୍ଷମା, କର କ୍ଷମା ।”

ଜାଣେ ଦେଖା ହେବ କେଉଁଠି ଦିନେ ନା ଦିନେ
ପ୍ରଭାତରେ ଅବା ସାନ୍ଧ୍ୟ ଭୋଜନାଳୟେ,
କେଉଁ କଲବସ୍ତ ଶପଣାଗାରେ ଅବା
ଭେଟ ହେବ ଜାଣେ ନିଶ୍ଚୟ କେଉଁଠାରେ,
ତୁମେ କି କହିବ, ଜାଣେ ନାଇ, ମୁଁ ଭାବୁଛି,
ମୁଁ କିନ୍ତୁ କହିବି “ଦେଖା ହୋଇଥିଲା ଥରେ ।”*

---

* ଏ. ଶେଠ୍ଙ୍କର ଗୋଟିଏ କବିତା ପଢ଼ି.....

# ପ୍ରାନ୍ତର

ତୁମେ ଆଜ ମୁଁ ଚାଲ ଯିବା, ଯିବା ଚାଲ,
ଭଲ ଲାଗେ ନାଇ ବଂଧା ଜୀବନ ଆଜ ।
ଲାଗେନା ତ ଭଲ ରୁଦ୍ଧ ଘରର ବାୟୁ,
ଚାଲ ଯେଉଁଠାରେ ନୂଆ ଏକ ଜଳବାୟୁ
ମନର ଜମିରେ ଫୁଟାଇ ପାରିବ ଖୁସି ।

ଏଇଠାରେ ଚାଲ ରଖିଦେଇ ଯିବା ଗାଡ଼ି,
ମାଇଲ ମାଇଲ ପାଦରେଇ ଚାଲ ଚାଲ……
ଖୋଲା ମଇଦାନେ, ଘାସ ଶିଁଖା ମାଡ଼ି ମାଡ଼ି,
ସବୁଜ ଘାସର ଜୁଆରରେ ଯିବା ବୁଡ଼ି ।

ରଖି ଦେଇ ଜୁତା ପାଦେ ଛୁଇଁ ଓଦା ମାଟି
ବର୍ଷା କାକର ସିକ୍ତ ପଢ଼ୁଆ ଭୂମି,
ମାଟି ଓ କାଦୁଅ, ପଙ୍କ ଗୋଡ଼ରେ ବୋଳି
ଦୌଡ଼ିବା ଖେଳ ଗ୍ରାମ୍ୟ ଶିଶୁଙ୍କ ସହ ।
ଚାଲ ଯିବା ଖୋଲା ମଇଦାନେ ଚାଲ ଚାଲ
ଫୁଙ୍ଗୁଳା ଦେହେ ଛୁଇଁ ଛୁଇଁ ମୌସୁମୀ ।

ଚାଲ ଯିବା ଚାଲ ରଖିଦେଇ ଯିବା ଗାଡ଼ି,
ଖାଲି ପାଦେ ଚାଲ ମାଇଲ ମାଇଲ ଚାଲ

ଏଠାରେ ସେଠାରେ ବୁଲିବା, ବସିବା ଖାଲି,
ସଞ୍ଜ ହେଲେ ସେଇ ଅଂଧାରେ ଯିବା ବୁଡ଼—
ପୁରୁଣା ଜଗତ କର୍ମର ସୂଚୀ ଭୁଲି ।

ନିର୍ଜନ ସେଇ ପ୍ରାନ୍ତରେ ଦେବା ଖୋଲି
ଦେହର ବସନ, ଅଂଧାରେ ଯିବା ମିଳି ।
ଦେହରେ ଜଡ଼ାଇ ବର୍ଷା—ମେଦୁର ରାତ
ଭୁଲିଯିବା ସବୁ ଅଂଧକାରରୁ ଶିଶୁ
ଖୋଲି ଦେବା ଦେହ, ଖୋଲି ଦେବ ତୁମେ ଶାଢ଼ୀ ।
ଏଇଠାରେ ଭୁଲି ରଖିଦେଇ ଯିବା ଗାଡ଼ି,
ଅଂଧକାରର ଅଭିସାରେ ଦୁଇ ଶିଶୁ ।

ଛିଁଡ଼ାଇ ଦାଁତେ ସବୁଜ ଘାସର ଶିଁଷା
ଚୋବାଇ ଖାଇବା ବର୍ଷାରେ ଧୂଆ ଘାସ,
କଞ୍ଚା, କୋମଳ, 'ନରମ ନଧର ଘାସ'
ହରଣ ହରଣୀ ଯର ଦାଁତେ ଟାଣି ଟାଣି ।
ଭୁଲି ଯିବା ଭୁଲି ବର୍ଷା-ବାଦଲ-ମିଶା
ମିଳିବ ଯେଉଁଠି ପଡ଼ିଆର ନିଃଶ୍ୱାସ ।

ରାତ ବେଶୀ ହେଲେ ଆସିବା ଉଭୟେ ଫେରି,
ଫେରିବା ଦ'ଜଣ ଦୁଇଟି ଚଢ଼େଇ ପରି ।
ସହରର ପୀତ ଆଲୋକରେ ସନ୍ତରି—
ସେଇ ପରିଚିତ ଦୈନିକ ଭୋଜଶାଳେ

ସବିଶେଷଜନ ତୁମେ, ମୁଁ ନବା ସାଉ ।
ଉଜ୍ଜଳ ନାଲ ପୀଠ ଅଲ୍ଟର'କାଟେ
ଥରେ ଆପଣାକୁ ଦେଖି ନେବା ଭଲ କରୁ ।
ଫୁଟ୍ ପାଥ୍ ଆଉ ରାସ୍ତାରେ ଢା'ପଟର
ବୁଲି ଏଣେ ତେଣେ ଘଷ୍ଟାଇବା କିଛି କାଳ—
ସବୁ କାମ ଭୁଲି ମିଛଟାରେ, ଅକାରଣେ—
ନବୁଦ୍ଧେଶ୍ୱର ପଥେ ପଥେ ଦୁଇ ଜଣ ।
ଗ୍ୟାସ୍ ଆଲୁଏ ଦୂର ଦୂର ଏଣେ ତେଣେ
ଆସିବା ଲେଉଟି ଦୁହେଁ ପୁଣି ଭେଟେଟବଲେ ।
ଅଥବା କାଟିବା ସିନେମାରେ କିଛି ବେଳ ? *

---

* ଝଙ୍କାର ରେ ପ୍ରକାଶିତ—୧୯୮୯

# ଦେବାନି ହେବାକୁ ଦିନ

ଗନ୍ଧ ପାଇଲଣି, ସୁରଭି ଫୁଲର ଗନ୍ଧ ।
ସୂର୍ଯ୍ୟର ଧନୁ ଶର ତା ପୋଷିବା ଆଗୁ
ରୋଧିବ ମୁଁ ତାକୁ, ରୋଧିବ ତାକୁ ମୁଁ ସାଥୀ
ସୂର୍ଯ୍ୟର ଦୀପ ନିଭାଇ ମୁଁ ଦେବି ଫୁଙ୍କି ।
ମୁକ୍ତ ତୁମର କେଶର ଶ୍ରାବଣେ ଆଜି
ସକାଳ ଆଲୁଏ ଘୋଡ଼ାଇ ରଖିବ ହେଲେ,
ତୁମର ଓ ମୋର ଦିଜଣଙ୍କ ଏଇ ଗନ୍ଧ
ବିଲମ୍ବିତ ହେବ, ଆଜିକ ଚନ୍ଦ୍ରାବତୀ ।

ଲୁପ୍ତ ତୁମର କବରୀର ତମସାରେ
ଜଡ଼ାଇ ନିଜକୁ ହଜିଯିବ ଜ୍ୟୋତ୍ସ୍ନା ଜାଲେ,
ଅଂଧକାରର ଦୁର୍ଗେ ଆଲୋକ ଆସି
କରାଘାତ କରି ଫେରିଯିବ ବାରେ ବାରେ ।

ତୁଙ୍ଗ ତୁମର ବକ୍ଷର ଦୁଇ ଗିରି
ଗୁମ୍ଫାରେ ଲୁଚାଇ ମୁହଁ ମୁଁ ରଖିବି ଦୂରେ—
ନିଜକୁ ସକାଳ ଆଲୁଅଠୁ ଘଣ୍ଟାଭରେ ।
ଦେବାନି ହେବାକୁ ଦିନ ଆଜି କେବେ ହେଲେ ।
ପରସ୍ପରର ଦେହେ ଦୁହେଁ ଯାଇ ଜଡ଼ି
ଛୁଁଡ଼ାଇ ଦାଁତେ ଅଧରର କିସଲୟ
ଖାଇବା ଉଭୟେ, ପିଇବା ଓଠର ମଧୁ
ଶିଥିଳ ବେଣୀର ଝରା ଫୁଲ ଉପବନେ ।

ଦୁହେଁ ଦୁହିଁଙ୍କର ନିଃଶ୍ୱାସେ ଖରତର
ଗଢ଼ିବା ଝାଞ୍ଜା, ଝଡ଼ର ଚଞ୍ଚଳତା ।
ଗଢ଼ିବା ଝାଞ୍ଜା, ମେଘର ଫୌଜ୍ ଦଳ,
ଯୁଗ୍ମ ବୁକୁର ଶିଖରରେ ଲଭି ଆମେ ।
ଅନୁସୂର୍ଯ୍ୟର ଜଳମିବ ନାଲ୍ ବତି ।
କ୍ଳାନ୍ତ ତୁମର ଦେହର ସୁରଭି ଝାଳ
କସ୍ତୁରୀ ଆଉ ପଦ୍ମ ଧୂଳିରେ ମିଳି,
ବେଶ ପାଣ ତୁମ ନୂତନ ପସ ପୁଣି
ଗୋଲାପ ଓ ଘାସ ଗଂଧରେ ଥିବ ଭରି ।

କପାଳରେ ମୋର ତୁମ ଦେହ ଶ୍ରମ ଜଳ
ଝରି ଠୋପା ଠୋପା ସଜିର ଶିଶିରକୁ
ଦୀର୍ଘାୟୁ କରି ରଖିବ; ଯିବା ଯେ ଭୁଲି—
ଆସିଛି ପ୍ରଭାତ, ଦେବା ନାଇ ଆସିବାକୁ ।

ତମର୍ ଚୂଡ଼ିର ମଧୁର ସେ ରଣି ଝଣି
କରାଇବ ମନେ ସଜିର ଝିଲ୍ଲି ସ୍ୱନ,
ତୁମର କେଶର ତମସାରେ ଯିବି ଭୁଲି
ଅବାଞ୍ଛିତ ଏ ପ୍ରଭାତର ଅଗମନ ।
ଦୁହେଁ ମିଳି ଆମେ ଗଢ଼ି ନେବା ଏକ ସାଭ
ସୂର୍ଯ୍ୟ କପର ଆସିବ ଦେଖିବା ଆମେ ।

---

# ଅବିଶ୍ୱାସ

ଆଜି ମୁଁ ପାଇବି ତୁମକୁ ଆଲିଙ୍ଗନେ !
ମନର ଶିଖୀ ନାଚେ,ସ୍ୱପ୍ନର ମଧୁବନେ ।
ସାରା ଦେହେ ମୋର ବିଦ୍ୟୁତ ଖେଳେ,
ଭାବେ ମୁଁ ଅମର କରିବି ସେ ଲଗନେ ।
ଆଜି କି ପାଇବି ତୁମକୁ ଆଲିଙ୍ଗନେ ?

ଆଜି ମୁଁ ପାଇବି ତୁମକୁ ଆଲିଙ୍ଗନେ !
ଖୋଲି ଦେବି ପୀଠେ ଅଙ୍ଗୁଳି ଦାମ ଗୁଚ୍ଛ
ମନର କେଦାରେ ଫସଲ ଉଠିବ ଭରି ।
କାନ୍ଧେ ତୁମେ ରଖିବ ମୁଣ୍ଡି ଅବାଧ ସମର୍ପଣେ,
ସତରେ ଆଜି କି ପାଇବି ଆଲିଙ୍ଗନେ ?

ଆଜି ମୁଁ ପାଇବି ତୁମକୁ ଆଲିଙ୍ଗନେ !
ବହୁ ଦିନର ପୂରିବ ମନସ୍କାମ,
କଳ୍ପନା ଆଜି ପ୍ରତ୍ୟକ୍ଷ ଯିବ ମିଳି ।
ପୀଡ଼ିବି ତୁମକୁ ଭୁଜ ପାଶେ ଛନ୍ଦ ଗାଣ୍ଠେ,
ସତେ କି ତୁମକୁ ପାଇବି ଆଲିଙ୍ଗନେ ?

କହ ବନ୍ଧୁ, ତାକୁ ପାଇବି ଆଲିଙ୍ଗନେ ?
ଭାଗ୍ୟେ ସେତେବେଳେ ବିଶ୍ୱାସ ହେବ
ହିମାଦ୍ରି ପରି,
ତାର ସ୍ତନ ଯେବେ ମୁଠି ଦିଅ ଭରି,
ବୁଝିବି ମୁଁ ତାକୁ ପାଇଛି ଆଲିଙ୍ଗନେ । *

---

* ଜର୍ମାନ କବି ହାଇନ୍‌ରିଖ୍‌ଙ୍କ ଗୋଟିଏ କବିତାର ଅନୁବାଦ ପଢ଼ି.....

# ଫାଂସି

ଏକ ଆଡ଼େ ମାନଶେନ କରୁଣ ପଲସୀ—
ଜଗଯ୍ନ, ଶ୍ମଶାନ—କୁହୁଡ଼,
ଆଜ ବ ଯା' ନାନାରୂପେ ଅଭିମୀତ ହୁଏ ।
ଅନ୍ୟ ଦିଗେ ଯୁବ୍ରନ୍ଧିତ, ଗତିବାନ ଫାଂସି
ସୀତ ନଈ ନାଲ୍ ହୋଇଯାଏ !
ଫା ଭିତରେ ଆମେ ଠିଆ
ଜ୍ୱଳନ୍ତ ଅନ୍ୱେଷା,
କ୍ଷୁଧା ଆମ ମେଣ୍ଟି ନାଇ ଜମା,
ମୁକ୍ତି ଆମ କାମ୍ୟ, ମୁକ୍ତି—
ସପନର ଆମ ଶିରୋନାମା ।
ମୁକ୍ତି କାହିଁ ? ମୁକ୍ତି କାହିଁ ?

ଯୁଗ ଯୁଗ ଧରି
ଖୋଜିଲଣି କେତେଇ ଦଲିଲ,
ସବୁ ତର୍କ, ସବୁ ଭାଷ୍ୟ, ସବୁ ଗବେଷଣା
ଅନାଦାୟୀ ଶୂନ୍ୟ ତହସିଲ ।
କେତେ ଥର ଗଲଣି ବେଢାଇ—
ମୁକ୍ତି କେବେ ମିଳେ ନାଇ ।
ମୁକ୍ତି ଟେଲକେ ଗଢ଼ନ୍ତି ନିଜେଇ ।
ତଥାପି ଖୋଜୁଁ ଆମେ
ଖୋଜିବାର ଆଦ ଅନ୍ତ ନାଇ ।

ନୂତନ ପ୍ରାଣର ଶିଳ୍ପ,
ଜୀବନର ସୁବର୍ଣ୍ଣ ସ୍ପର୍ଶ,
ମୂର୍ତ୍ତ ଯାହା ମନ୍ଦରଠେଁ
ପଥରେ ପିଞ୍ଚଳେ,
ସଂଖ୍ୟାହୀନ ଧିଲଣେ, ମିନାରେ,
ଖୋଜେ ନୂଆ ପରିଣତି,
ପ୍ରକାଶର ନୂଆ କାରୁକାର୍ଯ୍ୟ ।
ବଣିକ ବଜାରେ ।
ନୈର୍ବ୍ୟକ୍ତିକ କଣା-ବିକା ଦାମ
ବ୍ୟକ୍ତି କାହିଁ ? ମୁକ୍ତି କାହିଁ ? କାହିଁ ତାର ପ୍ରାଣର କବିତା ?
ଯ୍ବାଂସି କହେ କବ ତାର କେବଳ ଜନତା ।

ଯ୍ବାଂସି କହେ, ଯ୍ବାଂସି କହେ କଥା—
ପ୍ରାଣର ଭାସ୍କର୍ଯ୍ୟେ ଫୁଟେ
ଉଦୟର ସାଙ୍କେତିକ ବାର୍ତ୍ତା ! ❋

---

❋ "ସଙ୍କେତ"ରେ ପ୍ରକାଶିତ—୧୯୪୯

# ଭିଁନ୍ ଦେଶୀ

୧

ଗତକାଲି ଶନିବାର, ସଂଧ୍ୟା ଛ'ଟାରେ—
ହାଲ୍କା କୁହିର ମଧ୍ୟେ, ବେରୁଚିନ୍ ପାତଳା ଖୁସିରେ
ଆମେ ଯେବେ ବୁଲୁଥିଲେ ଧାଡ଼ି ଧାଡ଼ି ଦେବଦାରୁ ତଳେ,
ନୀଳ ଜହ୍ନ ଖେଳୁଥିଲା ସାଦା ମେଘେ, ଆକାଶେ, ସହରେ ।
କେବଳ ସ୍ୟାଣ୍ଡାଲ୍ ପାଦେ, ହାଲ୍କା ଭାରି ଲାଗୁଥିଲା ମୋତେ
ପ୍ରାୟ଼ଇ ଫୁଙ୍ଗୁଲା ପରି, ଖାଲି ଧୋତି, ପଞ୍ଜାବି ଦେହରେ,
ସଂଧ୍ୟାର ରହସ୍ୟେ ହଜି ପ୍ରାୟ଼ ଆମେ ଯାଇଥିଲେ ଭୁଲି—
ପରସ୍ପରେ, ମନେ ମନେ, ନୀଳ ନୀଳ ସ୍ୱପ୍ନର ବଜୁଲି ।
ଆମ ପାଖ କାଟି ସେ ଯେ ବୁଲୁଥିଲେ ବୃଦ୍ଧ ଅଧ୍ୟାପକ
ଖାଲି ପାଯ଼ଜାମା ଆଉ ଛୁଁଡ଼ା ଏକ ଗେଂଜି ପିନ୍ଧି ଦେହେ,
ଝଲୁଥିଲେ ମଦ ଖାଇ, ବେଳେ ବେଳେ କରୁଥିଲେ ବାନ୍ତି
ସାଙ୍ଗରେ ପ୍ରହରୀ କନ୍ୟା, ପରଶତା ଗାଯ଼ତ୍ରୀ ମହାନ୍ତି ।
ପରିଚୟ ଥିଲା ମୋର ନୁହେଁ କିଂତୁ ଖାଲି ଘନିଷ୍ଠତା,
କଂଧୁତାଠୁ ଗାଢ଼ତର, ନୁହେଁ କିନ୍ତୁ ପ୍ରଣୟ ଠିକ୍ ତା ।
ଶଦ୍ଧା ଶଦ୍ଧା ଭାବେ ହସି ଦୁହିଁଙ୍କି ସେ କଲା ନମସ୍କାର
ବହୁଦିନ ପରେ ଦେଖା, ଲଭିଛି ସେ ସତ୍ୟ ରୂପାନ୍ତର ।
ସୁନ୍ଦର ଚମଡ଼ା ତାର ମନେ ହେଲା ହୋଇଛି କୋଳପା,
ଦୁଧ ଡାଳିମର ରଂଗ ମନେ ହେଲା ହାଡ଼ିଲିଛି ସଫା ।
ମନେ ହେଲା ଦାନା ବାଁଧି ବହୁ ଦିନୁ ବଯ଼ସର ଖୋସା—
ନାଲ୍ ରକ୍ତ ନୀଳ ହେଲା—ମହିନାଲା ମନର କଲସା ।
ଦିନେ ସେ ଯୁବତୀ ଥିଲା, ଦିନେ ଥିଲା ସତରେ ସୁନ୍ଦରୀ,
ସ୍ତର ଚେହେରା ଧରି ଦେଖା ଦେଲା ପୁଣି ଆଗ ପରି,

ସନ୍ଧ୍ୟାର ସବୁଜ ମେଘେ କଇଁ ଧୀରେ ଆସୁଥିଲା ଗତ
ସ୍ୱପ୍ନର ବନ୍ଧୁ୍ୟର ମାଣି ଦେଖା ଦେଲା ଗାୟତ୍ରୀ ମହାନ୍ତ ।
ମନେ ହେଲା ଫୁଲ ଫୁଟେ ଯେମିତ ମୋ ଦେହ ମନେ ଆଜି,
ଆଖିରେ ସ୍ୱପ୍ନର ଭ୍ରମ, ରହିଲି ମୁଁ ଖାଲି ମୁହଁ ବୁଜି ।

ଗତକାଲି ଶନିବାର, ବେଲବୁଡ଼େ ସନ୍ଧ୍ୟା ଛ'ଟାରେ
ରାସ୍ତା କଡ଼େ ରଖି ଦେଇ କାର୍ ଟିରେ
ଦୁହେଁ ଯେବେ ବୁଲୁଥିଲେ—
ସେଇ ମେଣ୍ଟେ ଧାଡ଼ ଧାଡ଼ ଦେଖିଲି, ନାଲି ବହିର ଦୋକାନ—
ନୂତନ ଗ୍ରନ୍ଥର ଗନ୍ଧ, କାଗଜର ଚମତ୍କାର ଘ୍ରାଣ,
ପୀତାଭ, ଆର୍ଣ୍ଟିକ୍, ଭ୍ରମ, ରୋମାଞ୍ଚକ କାଗଜର ସ୍ପର୍ଶ
ନୂଆ ଶସ୍ୟ, ଜୁଇଫୁଲ ବାସ୍ନା ଅବା ଯାଇଅଛୁ ମିଶି,
ନିକଟରେ ଏଭ୍ରିଜାଗାରେ ସମ୍ମିଳିତ ଯଂଶ ସୌଜନ୍ୟଦାନ
ଚମତ୍କାର ରେକ୍ସିନ୍, ଚମଡ଼ାର ପୀତ, ନୀଳ ପଟ
କେତେ ମୃତ ଭାଷା, କେତେ ସଭ୍ୟତାର କରୁଣ ରହସ୍ୟ
ନୀଳ ଓ ସବୁଜ ରଂଗେ, ଆଲୁଅରେ ମାଗୁଣ ପ୍ରକାଶ ।
ହଳଦି, ବାଦାମୀ ନୀଳ ଭଳି ଭଳି ଆଲୁଅର ଛକେ
ନୂତନ ଗ୍ରନ୍ଥର ଶିଖା ଜଳି ଉଠେ ଅଶ୍ରୁମୀ କୌତୁକେ ।
ସେ ମୁହୂର୍ତ୍ତେ, ସେଇଠାରେ ଶତାବ୍ଦୀର କେତେ ପୃଷ୍ଠପଟ
ତନ୍ମୟ କରଗଲା ଭାଗ୍ୟକାନ୍ତ ମନର ମଲାଟ ।
ନୂତନ ବହିର ଘ୍ରାଣ, ରେକ୍ସିନ୍‌ର ସ୍ପର୍ଶ ଓ ବାସ୍ନା,
ମନରେ ଜଗାଇ ଗଲା କ ଚନ୍ଦନ ବନର ଜୋଛନା ।

ଏ ସମୟେ ଶୀର୍ଣ୍ଣ, ରୁଗ୍ଣା, ଅସ୍ତବେଳା ତୁମ ସନ୍ଧ୍ୟାସ୍ତ୍ରୀ
ପ୍ରଣୟର ସାଙ୍ଗେ ଦେଖା, ବୋଧହୁଏ କହିବାକୁ ବହୁ
ଆସିଥିଲ, ସ୍ୱପ୍ନମଖା ଟୁକୁ ଟୁକୁ ତାର ଆଖି ପତା
ତୁମକୁ ଅନାଇ କେତେ ଆଗ ପଛ କହିଗଲ କଥା ।
ତମ ଆଖି ଦେଖିତ ମୁଁ ଆସିଥିଲ ଛଳ ଛଳ ହୋଇ
ବନ୍ୟାର ଡାକ ବା ଆସି ଛୁଇଁଗଲ ଏକ ମଲ୍ଲ ନଈ ?
ନ ଦେଖିଲ ପର ତମେ ଅଙ୍ଗୁଳିରେ ଖୋଲି ଏକ ବହି
ପଢ଼ିବାରେ ମନ ଦେଲ, ମୁହୁଁ ଦେଖେ ପ୍ରଶ୍ନ ସେ ନାଇ ।
ନୂତନ ବହିର ସ୍ପର୍ଶ, କାଗଜର ଝୁରୁ ଝୁରୁ ଘ୍ରାଣ,
ଲକ୍ଷ ମୃତ ପ୍ରଜାଙ୍କର ବାର୍ତ୍ତା ଦୁଇ ମନେ,
ଆଣି ଦେଏ, ଜାଗେ ଦୁଇ ପ୍ରାଣ ।

ମନେ ହେଲା ଏହା ପଥେ, ଏହା ସାଂଗେ, ଏକ ସମ୍ପୁଟେର
ଦୁଇଜଣ ବାଟ ଭୁଲି, ଯାଇଅଛୁ ଭୁଲି କେତେବେଳେ
ଦୁଇ ଭିନ୍ନ ଜଗତକୁ, ତୁମେ ବା ମୁଁ କେହୁ ନାହୁଁ ଜାଣି,
ଗତକାଲି ଶନିବାର, ସନ୍ଧ୍ୟା ଛ'ଟାରେ ଭୁଲିଥିଲେଁ
ଯେବେ ଯୁକ୍ତପାଣି । *

---

* ଝଙ୍କାରରେ ପ୍ରକାଶିତ—୧୯୪୯

# ଗାନ୍ଧିଜୀ ଗହଣେ

( ଅଢ଼େଇ ବର୍ଷ ତଳେ କଲକତାରେ ଭୀଷଣ ହିନ୍ଦୁ ମୁସଲମାନ ହଣାକଟା ଲାଗିଥିଲାବେଳେ ଗାନ୍ଧିଜୀ ଶାନ୍ତି ସ୍ଥାପନ କରିବା ଲାଗି ବେଲିଆ-ଘାଟରେ ଅବସ୍ଥାନ କରୁଥାନ୍ତି । ଶହୀଦ୍ ସୁହ୍ରାବର୍ଦ୍ଦିଙ୍କୁ ସଙ୍ଗରେ ଧରି କଲିକତାର ଗୃହିଅଢ଼େ ସଭା ସମିତି କରୁଥାନ୍ତି । ସେଦିନ ଗାନ୍ଧିଜୀ ମାଟିଆ-ବୁରୁଜରେ ପ୍ରାର୍ଥନାନ୍ତିକ ସଭା ସାରି ଫେରୁଥିବାବେଳେ ହଠାତ୍ ବାଟରେ ଶହୀଦ୍ ସାହେବ କହିଲେ—"ଗାନ୍ଧିଜୀ କଲିକତାରେ ଥିବା ଯାକେ ଷ୍ଟେଜ୍ ସଭାକୁ ଯିବା ଆସିବା କରିବା ପାଇଁ ତମ ମିଲ୍ ଗାଡ଼ି ପଠାଇବ । ରାସ୍ତାରେ ଗାନ୍ଧିଜୀ ଗଲାବେଳେ ଯେପରି ଅସମ୍ଭବ ଭିଡ଼ ହେଉଚି, ସେଥିରେ ବଡ଼ ଗାଡ଼ିରେ ଯିବା ଆସିବା କରିବାଇ ଗାନ୍ଧିଜୀଙ୍କ ପକ୍ଷରେ ସୁବିଧା ।" ସେଇଦିନୁ ପ୍ରାୟ ଏକ ସପ୍ତାହ ପର୍ଯ୍ୟନ୍ତ ଷ୍ଟେଜ୍ ଗାଡ଼ି ନେଇ ଗାନ୍ଧିଜୀଙ୍କ ପାଖକୁ ଯିବା ଓ ତାଙ୍କୁ ସଭା ସ୍ଥାନକୁ ନେବା ଓ ଆଣିବାର ଭାର ଲେଖକ ଉପରେ ପଡ଼ିଥିଲା । ଫଳରେ ଏକାଦିକ୍ରମେ ଅନେକ ଦିନ ଗାନ୍ଧିସଙ୍ଗ ଲାଭ କରିବାର ସୌଭାଗ୍ୟ ଲେଖକର ଘଟିଥିଲା······ଆଉ ତାହାହିଁ ଶେଷ ସୌଭାଗ୍ୟ—କାରଣ ଏଇ ଘଟଣାର ଏକ ସପ୍ତାହ ପରେ ଗାନ୍ଧିଜୀ ଦିଲ୍ଲି ଯାଆନ୍ତି ଆଉ ସେଠୁ ଚିରଦିନ ପାଇଁ ପୃଥିବୀରୁ ବିଦାୟ ନେଇ ଚାଲି ଯାନ୍ତି······ )

ବେଲିଆଘାଟରୁ ଦୂରେ ମାଟିଆବୁରୁଜ
ମାଇଲ ମାଇଲ ଧରି ମଣିଷର ସୁଅ,
ଖଦଡ଼ପୁତୁଳି ଦେଖି ବୁଡ଼ିଲା ସୂରୁଜ,
ଆଗକୁ ଓଳିଲା ଆସେ ଲକ୍ଷ ଲକ୍ଷ ମୁଣ୍ଡ ।

ଗାନ୍ଧିଜୀ ଆସିବେ !
'ଗାନ୍ଧିଜୀ ଆସିବେ' ଭହେ ଜନତାର ଧାଡ଼ି,
ରାଜପଥ ଦୁଇ ଧାରେ ।
ହଠାତ୍ ଆମକୁ ଟପି ଗାନ୍ଧିଜୀଙ୍କ ଗାଡ଼ି
ମୋଡ଼ ଟପି ଗଲା ମାଡ଼ି
ଏପଟୁ ଆଗକୁ
ବାଆଁ ପଛ ଛକୁ
ଶୁଣାଗଲା ଏକସ୍ୱରେ 'ଗାନ୍ଧିଜୀ, ଗାନ୍ଧିଜୀ' ।
ଚିରିଯାଏ ଲୁଗାପଟା, ଫାଟେ ତା' ଚାମିଜା
ବେଲ ନାଇ ଦେଖିବାକୁ ।

ଧନ ପସ ନଭେ ! !

ଆମ ଗାଡ଼ି ପଛେ ଗୁଟେଲ୍, ସାଙ୍ଗେ ଅମ
ଶହାଦ୍ ସାହେବ,
ଏ. ପିର୍ ଓଗର୍ ଥୋକେ
ବଡୁଥାନ୍ତି—ବର୍ଷାଠାରେ କା ସଭା ହେବ ?

ଗାନ୍ଧିଜୀଙ୍କ ଗାଡ଼ି ରହେ ଜନତା ଗହଳେ,
ପାଖେ ଟପି ଆମ ଗାଡ଼ି ଆଗ ହୋଇ ଚଳେ ।
'ଅଭ୍ର'ର ଆଖିରେ ସ୍ପଷ୍ଟ କଉତୁକ ଖେଳେ
ମନୁ ଗାନ୍ଧି କରିଲେ ଇସାର—
ଅର୍ଥ ତାର—ଆମକୁ ପଛରେ ରଖି
ତୁମର ଯିବାଠା ଆଗେ ଖାଲି ପଡିଆର !

ଶହ୍ୱାଦ୍ ସାହେବ ହସି ଦେଲେ ତା ଜବାବ
ଗିଅର୍‌ରେ ଦେଇ ଜୋର;
ଅଗେ ଜନାର୍ଣ୍ଣବ ।

ଜନତାର ବେକ ଗୁଡ଼ ଲଂବ ଅସେ ମୁହଁ
ଅଗକୁ ବେଗରେ ।
'ଗାନ୍ଧିଜୀ ଅସନ୍ତି' ଡାକେ ସଭାର ରେଡ଼ଓ ।
ମୁହଁରୁ ବା ପଡ଼ିଯିବ ତଳେ ଖସି ଅଖି
ଅଖି ଗୁଡ଼ ପୁଣି ଅଶ୍ରୁ-ପୂଅ
ଖସି ବା ପଡ଼ିବ ତଳେ ପ୍ରତି ମୁହୂର୍ତ୍ତରେ !!

'ଗାନ୍ଧିଜୀ ଯାଅନ୍ତି' କହେ ବସ୍ତ ଗାଡ଼ବାଲା,
ବଳଦକୁ ରୋକ ଅଗେ କରଯୋଡ଼ ହେଲା ।
'ଗାନ୍ଧିଜୀ' 'ଗାନ୍ଧିଜୀ' କହେ ଦେଖାଇ ଅଙ୍ଗୁଠି
ରାସ୍ତାର ଦୋକାନୀ ।
ଜୟ୍ ହିନ୍ଦ୍ ନାରା ଉଠେ ଉଠି
ଉଛଳିତ ଉଦ୍ବେଳ ବାଣୀ
କରେ ତାଙ୍କ ଅଭ୍ୟର୍ଥନା
ବାଟେ ଘାଟେ ଗାନ୍ଧି-ଉନ୍ମାଦନା ।

ତା' ପରେ ସଭା ।
ରାମଧୂନ କଲେ ମନୁ, ଅଭା
ସଭାରେ ମାମୁଲି କଥା, ସାଧାରଣ
ମାମୁଲି ଭଜନ,

ଅତି ଅଳ୍ପ, ସରଳ ଭୂଷଣ,
ପୁରୁଣା କେତୋଟି ଶବ୍ଦ
ନାହିଁ କାହିଁ ମିଥ୍ୟାର ଆଘ୍ରାଣ ।

ସହଜ ସରଳ କଥା ।
ନାହିଁ କାହିଁ ମାରପେଞ୍ଚ କହିବାର ଫାଙ୍କେ,
ମଂଚ ପରେ ବସି ତାଙ୍କ ପାଶେ
ଶୁଣୁଥିଲି କାନ ଡେରି—
ଦେଖୁଥିଲି ବେଳେ ବେଳେ ଢଳୁଥିଲା ହଲି
କମ୍ପିତ ସେ ଛୋଟ ଟେଁଦା ମଥା ।

ବାଜୁଥିଲା ବେଳେ ବେଳେ କାନରେ ଆବାଜ,
"ଜୟ ଜୟ ଗାନ୍ଧି ମହାରାଜ ।"

ଅସମ୍ଭବ ଲଂବା ହାତ
ଆଶ୍ଚର୍ଯ୍ୟ ଓ ଉଜ୍ଜ୍ୱଳ ଚମଡ଼ା,
ଖୁବ୍ ବଡ଼ କାନ ଦୁଇ—
ଏଇ ଯାହା ଖାଲି ଦେଖିବାର ।
ତଥାପି ତ ମନେହୁଏ—
ତମ ଆମ ସବୁ ଜୀବନର
ଅନାଗତ ନୂତନ ଖସଡ଼ା
ଏଇ ଶ୍ରେଷ୍ଠ ମଣିଷଟି ଜାଣେ ।
କୋଟି କୋଟି ଲୋକ ଭିଡ଼େ
ଏଇ ଏକା—ଏଇ ମାତ୍ର ଜଣେ ।

ସାର୍ଥକ ଉଜ୍ଜ୍ୱଳ ହସ
ଅସମ୍ଭବ ପରିଷ୍କାର ବାୟୁ,
ମନେହେଲା ବାରଂବାର
ସତେ ଯେତେ ଆଶ୍ଚର୍ଯ୍ୟ ଏ ବାପୁ !!

ଆଶ୍ଚର୍ଯ୍ୟ ଗାନ୍ଧିଜୀ ।
ସାର୍ଥକ ଅଙ୍କର ସଂଖ୍ୟା,
ଫୁଟି ଲାଗେ ମନ ।
ଭଲ ଲାଗେ ସବୁ କଷ୍ଟ ଅଙ୍କ । *

---

*ଝଙ୍କାରରେ ପ୍ରକାଶିତ—୧୯୪୧

କବିତା ପଢ଼ିଲା ବେଳେ ଆମର ଯେଉଁସବୁ ମାମୁଲି ଚଳଣି ଶବ୍ଦ ଭିତରେ ଗୁପ୍ତ ଯୁକ୍ତାକ୍ଷର ଲୁଚି ରହିଛନ୍ତି—ଯାହା ଆଖିକୁ ଦେଖା ନ ଗଲେ ମଧ୍ୟ କାନରେ ବାଜନ୍ତି, ପୁଣି ଛନ୍ଦପତନ ଘଟାଇବା ପାଇଁ ଯେଉଁମାନଙ୍କର ଷଡ଼ଯନ୍ତ୍ରର ଅନ୍ତ ନାହିଁ ସେହି ସବୁ ଶବ୍ଦର ଲୁପ୍ତ ଯୁକ୍ତାକ୍ଷର ଓ ପାର୍ଶ୍ୱର ପ୍ରତି ସଚେତନ ହେବାକୁ ହେବ—ଯଥା: ମାଟିଆବୁରୁଜ, ଖିଦିରପୁର, 'ଙ' ତା'ପରେ, ନା, ତା'ପରେ ଇତ୍ୟାଦି । 'ଙ' ପାର୍ଶ୍ୱ ଉଚ୍ଚାରଣ ଦୃଷ୍ଟିରୁ 'ଙ୍ଗ' ଲେଖା ଯାଇଛି ।

# ଚିର ଜୟନ୍ତୀ

( ଗାନ୍ଧିଜୀଙ୍କ ଜୟନ୍ତୀ ଉପଲକ୍ଷେ ଲେଖା, ୧୯୪୯ )

ଜୀବନଟା ଯାର
ମଣିଷର ପାଦତଳେ ଏକ ନମସ୍କାର,
ଜୀବନର ପରିଚୟ ଖାଲି ଯା'ର ଜୀବନ, ଜୀବନ,
ମୃତ୍ୟୁ ତାର କରିପାରେ କେଉଁପରି କହ ଅବସାନ ?

ମଣିଷକୁ ଯିଏ ଏଥି ଡାକେ ଅହର୍ନିଶ
କହିଗଲା—
ମଣିଷର ମୂଲ୍ୟମାନ ମଣିଷ, ମଣିଷ ।
ତାକୁ ତୁମେ କେଉଁପରି ଦେବତାର ରୂପେ,
ମାଟିରୁ ଛଡ଼ାଇ ନେଇ ମନ୍ଦିରର ସେଇ ଅଂଧକୂପେ
ଜାଣି ଶୁଣି ହତ୍ୟା କର, ମରଣର ସୁବର୍ଣ୍ଣ ମୁକୁଟ
ଶିରେ ତାର ବାଂଧି ଦେଖ ଦେବତାର ଗୁରୁ କମ କୂଟ ?
ସେଠା ତାର ସ୍ୱନାମୃଣା, ମୂର୍ଖଣୀକୁ କରିଅଛୁ ମ୍ଳାନ,
ମୁକ୍ତି ଦିଅ, ମୁକ୍ତି ଦିଅ, ମୁକ୍ତି ଲାଗି ପାଗଳ ଯା' ପ୍ରାଣ !!

ସୂର୍ଯ୍ୟ କି କେବେ ମରେ ?
ତେବେ କାହିଁ 'ସୂର୍ଯ୍ୟ ନାହିଁ' କାନ୍ଦ ମର,
ମିଛେ ଅଂଧକାରେ ?
ଜାଣ ନା କି ତା'ର ଫେରି ଆସିବା ଠିକଣା,
ଲେଖା ଏଇ ରହି ପାରେ—
ଶୁଣ, ଶୁଣ, ପ୍ରଭାତ ଘୋଷଣା—

ମନେ ରଙ୍ଗ, ତାକୁ ରଖ ମନେ,
ଆମ ସାଙ୍ଗେ ଥିଲ ଯିଏ
ଏଇଠାରେ ମାଟିର ଅଗଣେ ।
ସେ ଯେ ଆମ ଜୀବନର ଏକ ଧାଗ,
ଭାବନାର ଏକ ବଡ଼ ଅଂଶ,
ଆମ କର୍ମେ, ପ୍ରାଣେ, ମନେ,
ତାର ନିତ ସ୍ୱୟଂଭୂ-ପ୍ରକାଶ ।
ଆମଠୁ ଅଲଗା କର, ବଡ଼ କଲ
କରନାହିଁ ତାକୁ ଛଡ଼ାଛଡ଼,
ଆମର ସେ ଏକ ଅଂଶ ହୋଇ ଥାଉ,
ଥାଉ ପଡ଼ି ଆମ ସଙ୍ଗେ ଜଡ଼ି ।

ସେ ଆମର ପରିଚୟ, ସେ ଆମର
ଅମର ପ୍ରତୀକ,
ଆମର ସ୍ୱାକ୍ଷର ସେ ଯେ,
ବଡ଼ ସାନ ଆମ ସ୍ୱପ୍ନଯାକ—
ସବୁରର ସେ'ତ ଶିରୋନାମା,
ଆମଠୁ ଛଡ଼ାଇ ନେଇ ମୂଲ୍ୟ ତାର
କଲ ନାଇ, କମା ।
ସେ ଆମର ସବୁ କୃତି,
ଗୌରବର ନକ୍ସଲ ତର୍ଜମା !

---

*'ପ୍ରଜାତନ୍ତ୍ରରେ' ପ୍ରକାଶିତ—ଗାନ୍ଧି ଜୟନ୍ତୀ ସଂଖ୍ୟା ୧୯୭୧

# ଉତ୍ତଙ୍ଗ

ଯାହା ନୁହେ—ଇଏ ଉତ୍ତରଣ ।
ଚକ୍ ଚକ୍ ସାଦା ସଡ,
ଜୋସ୍ନା-ମାଳ ଆକାଶ ଅସ୍ତୁନ ।
ନିଅ-ସ୍ଥଳ ହେଉ ମାଡିଲା
ଏଇ ପଥେ ହାର୍ଓ୍ୱାର ବିମାନ ।

ତୁମେ ଆସ, ପାଖେ ବସ
କଥା କହ ଆକାଶସଙ୍ଗିନୀ,
ନୁହଁ ପ୍ରିୟା,
ନୁହଁ ନୁହଁ ତୁମେ ପରକୀୟା,
ତୁମେ ଖାଲି ମୋ' ସହଯାତ୍ରିଣୀ ।
ଲୋଡ଼େ ନାଇ ଦେହ,
ମନ, ଅବା ପ୍ରେମ,
ଭଲ ଲାଗେ ତୁମର ସାନ୍ନିଧ୍ୟ,
ଅସହ୍ୟ ଥଣ୍ଡାରେ ଗୃହ ଏକ କପ୍ ଗୃ'
ଆଉ ତୁମର ସେ ସାଦା ହସ,
ଥଣ୍ଡା ହାତ, ଭେଲଭେଟ୍ ଆଖି,
ଆଉ ତୁମ କବରୀର ସୁରଭି ଅନନ୍ୟ ।

ଛଳେ ଦେଖ, ମାଳ ଦୁଧେ ଧୁଆ ସାଦା
ଚମତ୍କାର ସଡ,
ପୃଥିବୀର ରାଜପଥ—ଚକ୍ ଚକ୍ ଇସ୍ପାତ ଯେମିତି ।

ଗୃହଅଡ଼େ କହାର ଜଁଅର ।
ଆମ ଆଗେ ମାରଧାଇଁଛି
ପଛେ ଆମ
ଛୁଟେ ଝଡ଼ ଅକୁହା କଥାର ।

ସଫେଦ ସୁନ୍ଦର ପଥ,
ଶସ୍ୟ କ୍ଷେତ,
ଚଳ ବନେ ହରଣ ହରଣୀ,
ପିଉଥିବେ ଆନମନେ
ସବୁଜ ଘାସର ଦୁଧ,
ଖାଉଥିବେ ଘାସ ଶିଁଷା ଟାଣି,

ଥଣ୍ଡା ଲାଗେ, ଗୃହ ଗୃ,
ସିଗାରେଟ୍ ସର ଆସେ ମୋର ।
ନଗରୀର ବୁଢ଼ା ଦଣ୍ଡେ,
ଦେଖାଯାଏ ପ୍ରାନ୍ତର, ମିନାର ।
କଥା କହ, କଥା କହ,
ନିର୍ଜନ ବେଳାରେ—
ଜଳ ଉଠେ ନକ୍ଷତ୍ରିତ ରାତ,
ଆଜ କେଉଁ ଲଇଟ୍ ହାଉସ୍ର
ନାଲି ବତୀ ଦପ୍ ଦପ୍ କରେ ।

ପାର ହୋଇ ଆମେ ଭୂର୍ଜ ଅରଣ୍ୟ ସାଗର
ଛୁଟିଛେଁ ପୂର୍ବରୁ ପୂର୍ବେ

କେବେ ବା ଦକ୍ଷିଣେ
ବର୍ମାରୁ ମାଲୟ,
ଶାଳ ଅଭ ରବରର ଅରଣ୍ୟ ସନ୍ଧିର
ପ୍ୟାସିଫିକ୍ କୂଳ, ଅବା
ବ୍ୟାଙ୍କକ୍ ବନ୍ଦରେ,
ହଂକଂଗ୍ ପ୍ରାଚୀର ଝରେ
ସାଂଘାଇ ତୋରଣେ ।
ଦୂରରୁ ଦୂରକୁ,
ହାର୍ଓ୍ୱାର ଶୀତ୍କାର ଲଭି
ଆକାଶ ଅଂଗନ—
ମାଟିର ବଂଧନ ତେଜି
ଊର୍ଦ୍ଧାୟିତ ମନ,
ସପନୁ ସଜନ ।

ଏଇ ଦେଖ ରକ୍ତ-ମାଳ, ବଗ୍ଧିତ, ନବୀନ
ଦପଣେ ନାଲ୍ ଚୀନ ।
ଆଜି ଶ୍ୱେତ ସକାଳର ଶ୍ରେଷ୍ଠ ଅଗ୍ରଦୂତ ।
ବାଲ୍ଟର ପ୍ରତୀକ ।

ତୁମେ ଆମେ ଖୁଲ ଅଛେଁ ଦୂରରୁ ଦୂରକୁ
ଇଥାର୍ ତରଂଗ ଭେଦ
ମେଘୁ ମେଘାନ୍ତରେ,
ଦଗନ୍ତେ ହାର୍ଓ୍ୱାର ବେଗ

ଉଦ୍ବସନ୍ବିତ ବଡ଼,
କଂପି ଉଠେ ଜମି, ନୀର
ଅଣୁ, ପରମାଣୁ,
ପାତାଳ, ପାହାଡ଼ ।
ଚାରିଆଡ଼େ ପରମାଣୁ ଝଡ଼,
ଛୁଟି ଆମେ ଯାଏଁ କାହିଁ
କାହିଁ କେତେ ଦୂର ?
ସାହା ହୋନ୍ତୁ ଅଗ୍ନି, ବ୍ୟୋମ
ମରୁତ ସକଳ ।

ଚାଲ ଚାଲ ହାଓ୍ୱା ସାଙ୍ଗେ ଛୁଟି
ଇଥର ତରଂଗ ଭେଦି
ନବାଗତ ଉଷା ଶିରେ ଫୁଟି
ଝଟିକା ପର,
ବାହୁ ନାଅ ବମାନ ମୋ,
ବାହୁ ନାଅ ଦୁର୍ଦ୍ଦାନ୍ତ ମାତଳି ।

---

ମୁଦ୍ରାକର—ଶ୍ରୀ ଉମାଚରଣ ମହାନ୍ତି, କଟକ ପବ୍ଲିସିଂ ପ୍ରେସ୍, କଟକ—୧୯୪୯